ପ୍ରକାଶକ :—

ଶରତ ପଟ୍ଟନାୟକ

କମ୍ୟୁନିଷ୍ଟ ପାର୍ଟି

ଚାନ୍ଦନୀଚୌକ, କଟକ

ପ୍ରଥମ ସଂସ୍କରଣ ୧୯୩୭

ମୂଲ୍ୟ—ବାରଅଣା

ପ୍ରାପ୍ତିସ୍ଥାନ:—

ନବଯୁଗ ଗ୍ରନ୍ଥାଳୟ

ଫରେଷ୍ଟରୋଡ଼

ଚାନ୍ଦନୀଚୌକ, କଟକ

# ମୁଖବନ୍ଧ



ବର୍ତ୍ତମାନର ସମାଜ ବ୍ୟବସ୍ଥା ମନୁଷ୍ୟ ଜାତିର ନାନାପ୍ରକାର ଦୁଃଖ ଦୈନ୍ୟର କାରଣ ହେଉଛି; ସମାଜ-ଜୀବନ ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଛି ଯେ ସେଥିରେ ଯଦି ଘୋର ପରିବର୍ତ୍ତନ ନ ହୁଏ ତେବେ ମାନବ ଜାତିର ଅଗ୍ରଗତି ଏଣିକି ଅସମ୍ଭବ ହେବ । ତାର ଯାବତୀୟ ବିଶେଷତ୍ୱ, ତାର ସଭ୍ୟତା ସଂସ୍କୃତି ଆଦିର ଧ୍ୱଂସ ହିଁ ଏପରି ଅବସ୍ଥାରେ ଅନିବାର୍ଯ୍ୟ ହୋଇ ଉଠିବ । ସେଥିଲାଗି ଏ ବ୍ୟବସ୍ଥାକୁ ବଦଳେଇବା ଲାଗି ପୃଥିବୀର ପ୍ରଗତିଶୀଳ ଲୋକେ ଆଜି ବଡ଼ ବ୍ୟଗ୍ର ।

ମାତ୍ର ଏ ସମାଜ ବ୍ୟବସ୍ଥା ବଦଳିବ କିପରି ? ପୃଥିବୀ ପରିବର୍ତ୍ତନଶୀଳ । କିନ୍ତୁ ଆମ ଜୀବନଯାତ୍ରାର ଅନୁକୂଳ ଅବସ୍ଥା ଅତକୁ ଏ ପରିବର୍ତ୍ତନ ଆପଣା ଛାଏଁ ମାତ୍ର ଆସିବ ନାହିଁ, କିମ୍ବା ଇଚ୍ଛା କଲେହିଁ ଆମର ମନୋମତ ପରିବର୍ତ୍ତନ ଆସିବ ନାହିଁ ।

ସାମାଜିକ ଜୀବନ ଆକସ୍ମିକ ଘଟଣାବଳୀର ସମଷ୍ଟି ନୁହେଁ । ମାନବ ସମାଜର ବିକାଶର ଗୋଟିଏ ଶୃଙ୍ଖଳା ଅଛି । ତାର ଗୋଟିଏ ନିର୍ଦ୍ଦିଷ୍ଟ ଧାରା ଅଛି । ପ୍ରାକୃତିକ ବିକାଶ ଭଳି ସାମାଜିକ ବିକାଶର ମଧ୍ୟ ଗୋଟିଏ ନିଶ୍ଚିତ ବୈଜ୍ଞାନିକ ପଦ୍ଧତି ଅଛି । ଏହି ପଦ୍ଧତିକୁ ବୁଝିଲେ ତମେ ସାମାଜିକ ପ୍ରଗତିରେ ସହାୟକ ହୋଇ ପାରିବ । ବ୍ୟବସ୍ଥିତ ସମାଜ ଗଠନ ଦିଗରେ ସଚେତ ଭାବେ ଗତି କରିବା ସମ୍ଭବ ହେବ ।

ଏ ନିୟମ କଣ ? ସମାଜ ଗୋଟିଏ ଅବସ୍ଥାରୁ ଆଉ ଗୋଟିଏ ଅବସ୍ଥାକୁ ଗତି କରେ କିପରି ?

ଖାଦ୍ୟବସ୍ତୁ ଆଦି ମନୁଷ୍ୟର ଆବଶ୍ୟକୀୟ ଦ୍ରବ୍ୟର ପ୍ରଚଳିତ ଉତ୍ପାଦନ ପ୍ରଣାଳୀ ଉପରେ କୌଣସି ସାମାଜିକ ବ୍ୟବସ୍ଥାର ସ୍ୱରୂପ ନିର୍ଭର କରେ ।

ଉତ୍ପାଦନ ପାଇଁ ହଳ ଶଗଡ଼, ତୀର ଧନୁ ଆଦି ହତିଆର ମଣିଷର ଦରକାର ହୁଏ । ଏ ହତିଆର ତଥା ଏହାର ଉତ୍ପାଦନ ପାଇଁ ଯେଉଁ ଶ୍ରମ ବା ଲୋକଶକ୍ତିର ପ୍ରୟୋଗ ହୁଏ ତାହାକୁ ଉତ୍ପାଦନ ଶକ୍ତି କୁହାଯାଏ । ଉତ୍ପାଦନ ବ୍ୟକ୍ତିଗତ କ୍ରିୟା ନୁହେଁ । ପ୍ରକୃତିର ଦେହରୁ ଜୀବନ [illegible] ପାଇଁ ଆବଶ୍ୟକ ସାଧନଗୁଡ଼ିକୁ ସଂଗ୍ରହ କରିବା ଅଧିକାଂଶ ମନୁଷ୍ୟର ମିଳିତ ସଂଗ୍ରାମ ଦରକାର ହୁଏ । ଅର୍ଥାତ ଉତ୍ପାଦନ ସାମାଜିକ ପ୍ରକ୍ରିୟା । ଉତ୍ପାଦନ ଅବସ୍ଥାରେ ମନୁଷ୍ୟ ମନୁଷ୍ୟ ଭିତରେ ଯେଉଁ ସମ୍ବନ୍ଧ ସ୍ଥାପିତ ହୁଏ ତାକୁ ଉତ୍ପାଦନ—ସମ୍ବନ୍ଧ କହନ୍ତି ।

ଉତ୍‌ପାଦନ ଶ୍ରମ ଓ ଉତ୍ପାଦନ-ସମ୍ବନ୍ଧ ଏ ଉଭୟେ ମିଳି କୌଣସି ସମାଜ ବ୍ୟବସ୍ଥାରେ ଉତ୍‌ପାଦନର ପ୍ରକ୍ରିୟା ସ୍ଥିର କରନ୍ତି । ଏଇମାନେହିଁ ଉକ୍ତ ସମାଜର ଅର୍ଥିକ, ରାଜନୈତିକ ଅଧ୍ୟାତ୍ମିକ ଆଦି ବ୍ୟବସ୍ଥାର ସ୍ୱରୂପ ନିର୍ଣ୍ଣୟ କରନ୍ତି । ସମାଜର ବିକାଶର ଇତିହାସ ବାସ୍ତବରେ ଉତ୍‌ପାଦନର ବିକାଶର ଇତିହାସ ଭିନ୍ନ ଅଉ କିଛି ନୁହେଁ ।

ଉତ୍‌ପାଦନ ସର୍ବଦା ପରିବର୍ତ୍ତିତ ଓ ବିକଶିତ ହେଉଥାଏ । ଗୋଟିଏ ଅବସ୍ଥାରେ ସ୍ଥିର ହୋଇ ରହିପାରେ ନା । ମନୁଷ୍ୟ ନିଜ ଅଜାଣିତରେ, ଆପଣା ପରିଶ୍ରମକୁ ଲାଘବ କରିବା ଚେଷ୍ଟାରେ, ଉତ୍‌ପାଦନ-ଶ୍ରମ ଓ ଉତ୍‌ପାଦନର ଯନ୍ତ୍ରପାତିର ବିକାଶରେ ଲାଗିଥାଏ ଏବଂ ଏହାହିଁ ହେଉଛି ସାମାଜିକ ବିକାଶ ଓ ତାର ଧାରାବାହିକ ପ୍ରଗତିର ମୂଳ ହେତୁ । ଆଦିମ କମ୍ୟୁନିଷ୍ଟ ସମାଜରେ ମନୁଷ୍ୟ ଯେତେବେଳେ ପଥର ହତିଆର ବଦଳରେ

ଲୁହାର ହତିଆର ଅବସ୍ଥାର କଳ୍ପ ସେତେବେଳେ ସେ ଜାଣି ନ ଥିଲ ଯେ ତଦ୍ଦ୍ୱାରା ସେ ନିଜ ସମାଜର କବର ଖୋଳୁଛି ଏବଂ ତାହା ସ୍ଥାନରେ ଗୋଲାମ ସମାଜର ମୂଳଦୁଆ ପକାଉଛି । ସେହି-ଭଳି ସାମନ୍ତବାଦୀ ସମାଜର ନୂଆ ପୁଂଜିପତିମାନେ ବଡ଼ ବଡ଼ କାରଖାନାମାନ ଠିଆ କଲାବେଳେ କଳ୍ପନା ସୁଦ୍ଧା କରି ନ ଥିଲେ ଯେ ତାହା କମେ ସମଗ୍ର ସମାଜର ରୂପ ବଦଳେଇ ଦେବ ଏବଂ ସାମନ୍ତବାଦୀ ସମାଜର ଶ୍ମଶାନ ଉପରେ ବିଶାଳ ପୁଂଜିବାଦୀ ସମାଜର ଅବିର୍ଭାବ ହେବ । ଏହିପରି ଘଟେ ଉତ୍ପାଦନର ନୂଆ ଶକ୍ତିଗୁଡ଼ିକ ପୁରୁଣା ସମାଜ-ବ୍ୟବସ୍ଥାର ପରିଧି ବାହାରେ—ଉକ୍ତ ବ୍ୟବସ୍ଥାର ଲୋପ ପରେ ଉତ୍ପନ୍ନ ନ ହୋଇ ଉକ୍ତ ସମାଜ-ବ୍ୟବସ୍ଥାର ଭିତରେ—ଉତ୍ପନ୍ନ ହେଉଛନ୍ତି । ଏପରି ଅବସ୍ଥାରେ ସମାଜର ଅଗ୍ରଗତି ପାଇଁ ଉତ୍ପାଦନର ଶକ୍ତିମାନଙ୍କ ନିଜର କରି ନବା ସେମାନଙ୍କ ପ୍ରୟୋଜନୀୟତା ଅନୁସାରେ ଉତ୍ପାଦନର ସମ୍ବନ୍ଧ ଓ ପ୍ରକ୍ରିୟାରେ ପରିବର୍ତ୍ତନ ଆଣିବା ଆବଶ୍ୟକ । ଏ ନୂଆ ସମ୍ବନ୍ଧ ଏଇଭଳି ଉତ୍ପାଦନର ବିକାଶକୁ ଅଗ୍ରସର କରିବ । ଉତ୍ପାଦନ ଶକ୍ତି ଓ ଉତ୍ପାଦନ ସଂବନ୍ଧର ଅନବରତ ଏ ସଂଘର୍ଷହିଁ ସାମାଜିକ ପ୍ରଗତିର କାରଣ । ଅଜି ପର୍ଯ୍ୟନ୍ତ ଯେଉଁ ପାଞ୍ଚପ୍ରକାର ସାମାଜିକ ବ୍ୟବସ୍ଥା ହୋଇଛି—ଆଦିମ ସମାଜ, ଦାସ-ସମାଜ, ସାମନ୍ତବାଦୀ ସମାଜ; ପୁଂଜିବାଦୀ ସମାଜ ଓ ସୋସଲିଷ୍ଟ ସମାଜ—ସମସ୍ତଙ୍କ ପ୍ରଗତି ମୂଳରେ ଏହି ସଂଘର୍ଷ କାମ କରୁଛି । ପ୍ରତ୍ୟେକ ସମାଜ ବ୍ୟବସ୍ଥାରେ ପ୍ରଚଳିତ ଉତ୍ପାଦନର ସଂବନ୍ଧ ଉତ୍ପାଦନ ଶକ୍ତିକୁ ବିକଶିତ କରେ । ପରନ୍ତୁ ତାହା ଏପରି ବଢ଼େ ଯେ ତାର ବିକାଶ କାହିଁ ସମସ୍ତ ପରେ ଅଟକି ଯାଏ । ଏଣୁ ପୁରୁଣା ଉତ୍ପାଦନ ସଂବନ୍ଧ ବଦଳେଇ ନୂଆ ସଂବନ୍ଧ ଠିଆ ହୁଏ । ସମାଜର ସଂପୂର୍ଣ୍ଣ ବ୍ୟବସ୍ଥା ବଦଳିଯାଏ । ଏହାହିଁ ସାମାଜିକ ବିକାଶର କମ ।

ମାତ୍ର ଏ କ୍ରମ ଶାନ୍ତିପୂର୍ବକ ଓ ବାଧାବିଘ୍ନରହିତ ହୋଇ ଚଳେ ନାହିଁ । ଏ କ୍ରମର ଇତିହାସ ମହାନ ସଂଘର୍ଷ ଓ ବିପ୍ଳବର ଇତିହାସ ।

ଗୋଟିଏ ସମୟ ପର୍ଯ୍ୟନ୍ତ ପୁରୁଣା ସମାଜ ବ୍ୟବସ୍ଥା ଭିତରେ ଉତ୍ପାଦନ ଶକ୍ତି ବଢ଼ିଚାଲେ ଏବଂ ଉତ୍ପାଦନ ସଂବନ୍ଧରେ ମଧ୍ୟ ସାନ ବଡ଼ ପରିବର୍ତ୍ତନ ହୁଏ । ପୁଣି ଏପରି ସମୟ ଆସେ ଯେତେବେଳେ ଉତ୍ପାଦନ ସଂବନ୍ଧର ସୀମା ଉତ୍ପାଦନ-ଶକ୍ତିର ବିକାଶରେ ବାଧକ ହୁଏ । 'ପ୍ରଚଳିତ ଉତ୍ପାଦନ-ସଂବନ୍ଧ ଓ ତାର ରକ୍ଷକ ଶାସକ ସଂପ୍ରଦାୟ ଉତ୍ପାଦନ-ଶକ୍ତିର ବିକାଶରେ ପ୍ରବଳ ବାଧା ଦିଅନ୍ତି । ଏ ବିରୋଧକୁ ଦୂର କରିବାଲାଗି ସଚେତନ ଓ ସଂଗଠିତ ଗଣ-ବିପ୍ଳବ ଦରକାର ହୁଏ ।

ମନୁଷ୍ୟ ସମାଜର, ଶୋଷିତ ଶ୍ରମିକ କୃଷକ ମଧ୍ୟବିତ୍ତ ଶ୍ରେଣୀର ଏହାହିଁ କାମ ଓ ଦାୟିତ୍ୱ । ଏହା ଆପଣ ଛାଏଁ ସଂଗଠିତ ହେବ ନାହିଁ ।' ମନୁଷ୍ୟ, ଜନତା ହିଁ, ସାମାଜିକ ବିକାଶର ସବୁଠାରୁ ବଡ ଅସ୍ତ୍ର ହେବ ।

କମ୍‌ରେଡ୍ ରାମକୃଷ୍ଣ ପତିଙ୍କ ଲିଖିତ 'ପୁଂଜିବାଦ' ପୁସ୍ତକରେ ଏହି ବିକାଶର ନିଖୁଣ ଚିତ୍ର ଓ ଦିଗନିର୍ଦ୍ଦେଶ ଆପଣ ପାଇବେ । ସମାଜକୁ, ସମାଜର ଧାରାକୁ ବିଶ୍ଳେଷଣ କରି ଦେଖିବାରେ, ମାନବ ସମାଜକୁ ପ୍ରଗତି ପଥରେ ନେବାଲାଗି କ୍ରିୟାତ୍ମକ ସହଯୋଗ କରିବାରେ ଏହା ଆପଣଙ୍କର ସହାୟକ ହେବ । ବ୍ରହ୍ମପୁର ଜେଲରେ ଅଟକ ବନ୍ଦୀ ଥିଲାବେଳେ କମ୍ୟୁନିଷ୍ଟ ପାର୍ଟିର ସାଥୀ ଓ ସହଯୋଗୀମାନଙ୍କ ଶିକ୍ଷା ଲାଗି ଯେଉଁ ପୁସ୍ତକ ମୁଖ୍ୟତଃ ଲେଖା-ଯାଇଥିଲା ତାହା ପ୍ରଦେଶର ବିରାଟ ବିପ୍ଳବୀ ସଂପ୍ରଦାୟ ହାତରେ ଆଜି ଅର୍ପଣ କରାହେଉଛି ।

—ଶରତ ପଟ୍ଟନାୟକ



# ଆଉ ପଦେ



କିଛି କାଳ ପାଇଁ ସାଧାରଣ ଜୀବନର ବାହାରେ ଥିଲି । ସେଠାରେ ମଧ୍ୟ ମୋର ବହୁତ ସାଥୀ ଓ ସହଯାତ୍ରୀ ଥିଲେ । ଆଦର୍ଶ ପାଇଁ ସେଠାରେ ମଧ୍ୟ କର୍ତ୍ତବ୍ୟ କରିବାକୁ ପଡ଼ୁଥିଲା । ନୀତି ଓ ତଥ୍ୟ ଆଲୋଚନାରେ କଟୁଥିଲା ବେଶୀ ସମୟ । ତେଣୁ ପଠନ-ଚକ୍ରରେ ବା କ୍ଲାସରେ ଆଲୋଚନା ପାଇଁ ଯେଉଁ ନୋଟ କରିଥିଲି ତାକୁ ସଙ୍କଳ କରି ପ୍ରକାଶ କରିବା ପାଇଁ ସାଥୀମାନେ ଅନୁରୋଧ କରିଥିଲେ । ଏହି ପୁସ୍ତିକାଟି ତାହାରହିଁ ସମନ୍ୱୟ ।

ମାର୍କ୍ସୀୟ ପଣ୍ଡିତମାନେ ଏ ବହିରୁ ବିଶେଷ କିଛି ପାଇବେ ନାହିଁ । ପୁଞ୍ଜିବାଦୀ ଅର୍ଥନୀତିର ସୂଚନା ମାତ୍ର ଏଥିରୁ ମିଳିବ । କିନ୍ତୁ ପୁଞ୍ଜିବାଦୀ ଅର୍ଥନୀତି ଜାଣିବା ପୂର୍ବରୁ ସାମନ୍ତବାଦୀ ଓ ଆଦିମଯୁଗର ଅର୍ଥନୀତିର ଅଳ୍ପ ଧାରଣା ହେବା ପ୍ରୟୋଜନ ବୋଲି ତାର ଅବତାରଣା ମାତ୍ର କରାଯାଇଛି । ଶେଷରେ, ଫାସିଷ୍ଟବାଦ ଆଲୋଚନା ମଧ୍ୟ ଟିକେ ଯୋଡ଼ିଦେବା ଉଚିତ ବୋଲି ଭାବି ତାହା ସ୍ଥାନ ଦିଆହେଲା ।

ବହିରେ ବହୁତ ଭୁଲ ରହିଯାଇଛି । ଗୋଟିଏ ଉଦାହରଣ ଦିଆଯାଉ । ବଣିକର ପୁଞ୍ଜି, 'ବଣିକ-ପୁଞ୍ଜି' ( mercantile apital ) ହେବା ପରିବର୍ତ୍ତେ ବଣିକର ପୁଞ୍ଜି ହୋଇ ଯାଇଛି । ଯାତ୍ ଅର୍ଥର ଆକାଶ ପାତାଳ ପ୍ରଭେଦ । ତେଣୁ ପାଠକମାନେ

ଏହି ଅକ୍ଷମଣୀୟ ଭୁଲଗୁଡ଼ିକ ପାଇଁ କ୍ଷମା ତ ଦେଇ ପାରିବେ ନାହିଁ, କିନ୍ତୁ ବିରକ୍ତ ଯେପରି ନ ହୁଅନ୍ତୁ ସେଥିପାଇଁ ଅନୁରୋଧ ।

ଓଡ଼ିଆରେ ମାର୍କ୍‌ସୀୟ ସାହିତ୍ୟ ନାହିଁ । ବହୁ ବର୍ଷ ତଳେ ସାଥୀ ୰ ଭଗବତୀଙ୍କ ଦ୍ୱାରା ଅନୁବାଦ କରା ହୋଇଥିବା 'ବୈଜ୍ଞାନିକ ସାମ୍ୟବାଦ'ଟି କେବଳ ସମୟର ପରଦା ତଳୁ ଉଁକି ମାରୁଛି । ଉଦବେଗ ନାହିଁ—କିନ୍ତୁ ତାର ରକ୍ତରଞ୍ଜିତ ନିଶାଣ ଦେଉଛି ପ୍ରଳୟର ଆହ୍ୱାନ !

ପୃଥିବୀର ସବୁଆଡ଼େ ଆଜ ମାର୍କ୍‌ସୀୟ ଅର୍ଥନୀତି, ସମାଜନୀତି ଏକକଥାରେ ମାର୍କ୍‌ସୀୟ ସାହିତ୍ୟର ଆଦର । ମଣିଷର ଚେତନା ଯେତିକି ଯେତିକି ବଢ଼ୁଛି ସେତିକି ସେତିକି ସେ ମାର୍କ୍‌ସୀୟ ସାହିତ୍ୟ ପ୍ରତି ଅନୁରକ୍ତ ହେଉଛି । ଏପରିକି ପୃଥିବୀର ଅନ୍ୟାନ୍ୟ ଦେଶ ତଥା ଆଜି ଓଡ଼ିଶା ଛଡ଼ା ଭାରତର ଅନ୍ୟ ସବୁ ପ୍ରଦେଶରେ ମାର୍କ୍‌ସୀୟ ସାହିତ୍ୟର ପ୍ରକାଶ ଓ ପ୍ରଚାର ବେଶ ଦ୍ରୁତ ଗତିରେ ଚାଲିଛି । ଓଡ଼ିଶାରେ ସେପରି ଦ୍ରୁତ ଗତିରେ ଚାଲି ନ ଥିଲେ ମଧ୍ୟ ଅଗ୍ରହ ବଢ଼ି ଚାଲିଛି । ଏ ବହି ପ୍ରକାଶର ଭିତର ରହସ୍ୟଟି ଜାଣିଲେ ବୁଝିହେବ ଯେ ଓଡ଼ିଶା ଦେଶର ଗାଁ ଗହଳର ଲୋକଙ୍କ ମଧ୍ୟ ମାର୍କ୍‌ସୀୟ ସାହିତ୍ୟ ପଢ଼ିବା ପାଇଁ କେତେ ବ୍ୟାକୁଳ ହେଲେଣି ।

କିଛି ଦିନ ତଳେ ଏ ବହିଟି ଉଣ୍ଡାରିବାକୁ ଦେଲି । ସାଥୀ ପ୍ରହ୍ଲାଦ ଜେନା ଏହାକୁ ଉଣ୍ଡାରୁଥିବା ବେଳେ ଶଙ୍କରପୁର କମିଟିର ସାଥୀମାନେ ଦେଖିଲେ—ପଢ଼ିଲେ ମଧ୍ୟ । ତାଙ୍କର

ଅଗ୍ରହୀ କର୍ମୀଙ୍କ—ଅନେକେ ମଧ୍ୟ ମାର୍କ୍‌ସୀୟ ସାହିତ୍ୟ ପଢ଼ିବା ପାଇଁ ବ୍ୟାକୁଳ ଥିଲେ । କମିଟିରେ ସ୍ଥିର ହେଲେ ଯେ ଏ ବହିଟି ପ୍ରକାଶ କରାଯିବ । କିନ୍ତୁ ପାର୍ଟିର ଟଙ୍କା ନାହିଁ—ତେଣୁ ସେଠୁ ଶଙ୍କରପୁର କମିଟିର ନରହରି ନାୟକ ବହିଟି ପ୍ରକାଶ କରିବା ପାଇଁ ଟଙ୍କା ଧାର କରି ଗତ ୧୧ଟା ବେଳେ ଅଢ଼େଇଶ ଟଙ୍କା ମୋତେ ଦେଇଗଲେ । ଶଙ୍କରପୁର କମିଟି ଇଚ୍ଛା କରି ନ ଥିଲେ ଓ ସାଥୀ ନରହରି ନାୟକ ଟଙ୍କା ଦେଇ ନ ଥିଲେ ବହିଟି ପ୍ରକାଶ ପାଇ ନ ଥାନ୍ତା ।

ଏଇଥିରୁ ଜଣାଯିବ ଯେ ଓଡ଼ିଶାର ଲୋକେ ମଧ୍ୟ ମାର୍କ୍‌ସୀୟ ସାହିତ୍ୟ ପଢ଼ିବା ପାଇଁ କି ବ୍ୟାକୁଳ ହେଲେଣି । ଅର୍ଥାତ୍ ଲୋକେ କେତେଦୂର ଆଗେଇଲେଣି ।

ବହିଟି ଲେଖିବା ଅସମ୍ଭବ ହୋଇଥାଆନ୍ତା ଯଦି ସାଥୀ ୵ ଅଧିକାରୀ ମହାନ୍ତିଙ୍କର ନିଷ୍ଠା ଓ କର୍ମପ୍ରାଣତା ଏହା ପଛରେ ନ ଥାଆନ୍ତା । ମୁଁ ଡାକେ ସେ ଲେଖନ୍ତି; କିନ୍ତୁ ଲେଖନ୍ତି ବୁଦ୍ଧିର ପରଖ ଦେଇ । ମୁଁ ଥକି ପଡ଼େ; କିନ୍ତୁ ସେ ଥକିବାର ନୁହଁନ୍ତି—ସେ ଯେ ଗୋଟିଏ ଜ୍ୱଳନ୍ତ ଅଗ୍ନିଶିଖା ଅଥଚ ଚନ୍ଦ୍ରକିରଣ ପରି ଶାନ୍ତ ଓ ସ୍ନିଗ୍ଧ । ଏହା ଯେ କେହି ତାଙ୍କ ସମ୍ପର୍କରେ ଆସିଛି ସେ କହିବ ।

ସାଥୀ ବିଜୟ ଚନ୍ଦ୍ର ଦାସ ଅନେକଗୁଡ଼ିଏ ସୁଚିନ୍ତିତ ସୂଚନା ଦେଇଛନ୍ତି ତାଙ୍କୁ ଧନ୍ୟବାଦ ଦେବିନି, ଏଟା ଯେ ତାଙ୍କର କର୍ତ୍ତବ୍ୟ । ଶେଷରେ ସାଥୀ ଘନଶ୍ୟାମ ଖଣ୍ଡୁଆଳ, ଦୁଃଶାସନ

କେନା, ନରସିଂହ ଦାସ ପ୍ରଭୃତି ସାଥୀଙ୍କୁ ସେମାନଙ୍କ ସାହାଯ୍ୟ ଯୋଗୁଁ ଧନ୍ୟବାଦ ।

ଦ୍ୱିତୀୟ ସଂସ୍କରଣରେ ଭୁଲଗୁଡ଼ିକ ସଂଶୋଧନ କରି ବହିଟିକୁ ପରିବର୍ଦ୍ଧିତ କରିବାର ବାସନା ରହିଲା ।

ଆଉ ଗୋଟିଏ କଥା କହି ରଖିବା ଉଚିତ । ସାମ୍ୟବାଦ କହିଲେ ସାଧାରଣତଃ ସୋସ୍ୟାଲିଜିମ୍ ବୋଲି ଲୋକେ ବୁଝନ୍ତି । କିନ୍ତୁ ପ୍ରକୃତରେ ତା ନୁହେଁ । ସୋସ୍ୟାଲିଜିମ୍‌ର ପ୍ରକୃତ ଅର୍ଥ ସମାଜବାଦ । କମ୍ୟୁନିଷ୍ଟ ସମାଜକୁ ସାମ୍ୟବାଦୀ ସମାଜ ବୋଲି କୁହାଯିବ । ତେଣୁ ସେହି ଅର୍ଥରେ 'ସମାଜବାଦ' ଓ 'ସାମ୍ୟବାଦ' ଏହି ଦୁଇଟି ଶବ୍ଦ ବ୍ୟବହାର କରାହୋଇଅଛି ।

—ଲେଖକ

# ପୁଞ୍ଜିବାଦ



## ★ ପ୍ରଥମ ପରିଚ୍ଛେଦ ★

ସମାଜବାଦ ଅଳ୍ପ ପର୍ଯ୍ୟନ୍ତ କଳ୍ପନାର ବସ୍ତୁ ଥିଲା । କିନ୍ତୁ ତାହା ବାସ୍ତବରୂପ ନେଇ ବିଜ୍ଞାନରେ ପରିଣତ ହୋଇଛି । ମାର୍କସ ଓ ଏଙ୍ଗେଲ୍ସ ଯେଉଁ ନୀତି ବର୍ଣ୍ଣନା କରିଗଲେ ଲେନିନ୍ ତାହା କାର୍ଯ୍ୟାନ୍ୱିତ କରି ପୃଥିବୀକୁ ଚମତ୍କୃତ କରି ଦେଇଛନ୍ତି । ସୋଭିଏଟ୍ ରୁଷ ହିଁ ତାର ଜୀବନ୍ତ ସାକ୍ଷ୍ୟ । ଗତ ୨୮ ବର୍ଷ ହେଲା ଏହି ସୋଭିଏଟ୍ ରୁଷ ଯାହା ପ୍ରମାଣ କରୁଛି, ପୃଥିବୀର ଅନ୍ୟ ଦେଶ ମଧ୍ୟ ସେହିଆଡ଼େ ଗତି କରି ରୁଷ ପରି ସମାଜବାଦ ପ୍ରତିଷ୍ଠା କରିବା ଦିଗରେ ଚେଷ୍ଟା କରୁଅଛନ୍ତି । ଆଜିର ଇଉରୋପ ତାର ଉଦାହରଣ । ପୁଞ୍ଜିବାଦୀ ଧନକୁବେରଙ୍କ ହାତରେ ସବୁ କଳକାରଖାନା, ବ୍ୟାଙ୍କ, ଜମି ଓ ଖଣି ରହିଛି । ଧନିକ ଶ୍ରେଣୀ ନୀତି, ଧର୍ମ, ପରମ୍ପରା ତଥା ଆଇନକାନୁନର ଅସ୍ତ୍ର ନେଇ କିପରି ଦରିଦ୍ର ଖଟିଖିଆ-ଶ୍ରେଣୀକୁ ଦିନକୁଦିନ ଦରିଦ୍ରରୁ ଦରିଦ୍ରତର କରେ ତାହା ମାର୍କସବାଦ ପଦାରେ ପକାଇ ଦେଇଛି । ଆଧୁନିକ ପୁଞ୍ଜିବାଦ ବିକାଶ କରିବା ସଙ୍ଗେ ସଙ୍ଗେ କ୍ଷୁଦ୍ର କ୍ଷୁଦ୍ର ଶିଳ୍ପ ବ୍ୟବସାୟମାନ ଲୋପ ପାଏ—ବଡ଼ ବଡ଼ କଳକାରଖାନା ବସେ—ସର୍ବହରା ଶ୍ରେଣୀ ତିଆରି ହୁଏ; ଅବଶ୍ୟମ୍ଭାବୀ ସମାଜବାଦ

ପ୍ରତିଷ୍ଠା କରିବା ଦିଗରେ ସେ ପ୍ରସ୍ତୁତ ହୁଏ । ଶ୍ରେଣୀ ସଂଘର୍ଷ ଉତ୍କଟ ହୋଇ ଉଠେ ।

ସମାଜବାଦ ପ୍ରତିଷ୍ଠା କରିବାକୁ ହେଲେ ସର୍ବହରାଙ୍କୁ ଶ୍ରେଣୀ-ସଂଗ୍ରାମ ଦ୍ୱାରା ରାଜନୈତିକ କ୍ଷମତା ହାସଲ କରିବାକୁ ହେବ-ତାହାହେଲେ ସୃଷ୍ଟି ମୂଲ୍ୟ ସୁଖ ଶାନ୍ତିରେ ରହି ମର୍ତ୍ତ୍ୟରେ ସ୍ୱର୍ଗର ନନ୍ଦନକାନନ ଗଢ଼ି ପାରିବେ ।

ପୁଞ୍ଜିବାଦୀମାନଙ୍କୁ ଶ୍ରମିକମାନଙ୍କର ଅବସ୍ଥା ସୁଧାରିବା ପାଇଁ ଉପଦେଶ ଦେଇ ବା ସେମାନଙ୍କର ହୃଦୟ ପରିବର୍ତ୍ତନ କରାଇବାର ଚେଷ୍ଟା ଦ୍ୱାରା ସମାଜବାଦ ପ୍ରତିଷ୍ଠା ହୋଇ ପାରେନା ବା ମଣିଷ ସମାଜ ସୁଖଶାନ୍ତିରେ ରହି ପାରେନା; ଅଥବା ସମାଜକୁ ପୁନର୍ଗଠନ କରିବାର ଯୋଜନା ବା ଷଡ଼ଯନ୍ତ୍ର ମୂଳକ ସଂଗଠନ ଦ୍ୱାରା ସମାଜବାଦ ଅସମ୍ଭବ । ସମାଜବାଦ ସମ୍ଭବ, କେବଳ ଯଦି ସର୍ବହରା, ଶ୍ରେଣୀ-ସଂଗ୍ରାମରେ ଶିକ୍ଷିତ ହୁଏ ଓ ପୁଞ୍ଜିବାଦୀ ସମାଜ ଓ ତାର ସମର୍ଥକମାନେ କପଟ ପ୍ରକୃତର ଶ୍ରେଷ୍ଠ ଅବଦାନ—ମଣିଷ ଜାତିର ବିକାଶ ପଥରେ କଣ୍ଟକ ତାହା ଉପଲବ୍ଧି କରେ ।

## ମାର୍କସବାଦ ଆମକୁ ଶିଖାଇଛି କଣ ?

ମଣିଷ ଜାତିର ଇତିହାସକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବୁଝିବା ପାଇଁ ମାର୍କସବାଦ ଆମକୁ ଶିଖାଇଛି । ଏହାହିଁ ହେଲା ନୂଆ ତଥ୍ୟ । ମାର୍କସବାଦ ଆହୁରି ମଧ୍ୟ ଶିଖାଇଛି ଯେ, ପ୍ରତ୍ୟେକ ମଣିଷ ଓ ଘଟଣାବଳୀକୁ ପରସ୍ପରର ସଂବନ୍ଧ ଓ କାର୍ଯ୍ୟକାରଣ ଦୃଷ୍ଟିକୋଣରୁ ଦେଖିବାକୁ ହେବ । ପ୍ରତିଦିନର ଘଟଣାବଳୀକୁ ଲକ୍ଷ୍ୟ କରି ତାକୁ ମଣିଷର ବିକାଶ ଅନୁକୂଳ ଗତି କରାଇବାହିଁ ବୈଜ୍ଞାନିକ ଦୃଷ୍ଟିକୋଣ, ଉଦାହରଣ ସ୍ୱରୂପ ଦେଖାଯାଉ ।

ସାଧାରଣ ଲୋକ କହୁଥିଲେ ଏବେ ମଧ୍ୟ କହୁଛନ୍ତି ଯେ, ଇନ୍ଦ୍ର ଦେବତା ବର୍ଷା କରୁଛନ୍ତି । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଲୋକ ଜାଣିଲେ ଯେ, ପାଣି ବାଷ୍ପ ହୋଇଯାଏ । ବାଷ୍ପ ଉପରେ ଘନୀଭୂତ ହୋଇ ବର୍ଷା ହୁଏ; ସେହିପରି ଅର୍ଥନୀତି ଓ ରାଜନୀତି କ୍ଷେତ୍ରରେ ମଧ୍ୟ ଲୋକ ଉପରେ ଠାଉରିଆ କରି ଭାସିଯାଏ । ପ୍ରକୃତ ଘଟଣା ଏଡ଼ିଯାଏ, ଅବାସ୍ତବ-ପ୍ରବଣତା ଦ୍ୱାରା ପ୍ରକୃତ ଘଟଣାବଳୀର ସମ୍ବନ୍ଧ ଦେଖିପାରେନା ଏହା ଆମେ ପ୍ରତିଦିନର ଅନୁଭୂତିକୁ ଲକ୍ଷ୍ୟ କଲେ ବୁଝି ପାରିବା । ବୁର୍ଜୁଆ- ବୈଜ୍ଞାନିକମାନେ ସମାଜ ବିକାଶର ନିୟମକୁ ବୁଝି ନ ପାରି କୌଣସି ରୂପରେଖ ଦେଇ ପାରି ନାହାନ୍ତି । ସେମାନଙ୍କ ମତରେ ସମାଜ ବିକାଶର ଇତିହାସ ହେଉଛି ଆକସ୍ମିକ ଘଟଣାବଳୀର ଇତିହାସ । କିନ୍ତୁ ମାର୍କସଙ୍କ ଅନୁସାରେ ସମାଜ ବିକାଶର ସ୍ୱତନ୍ତ୍ର ନିୟମ ଅଛି । ମଣିଷର ଆବଶ୍ୟକତା ଯେତିକି ବଢ଼େ ସେତିକି ସେତିକି ତାକୁ ପୂରଣ କରିବା ପାଇଁ ମଣିଷ ଅନବରତ ଯୁଦ୍ଧ କରେ । ଅଭାବର ତାଡ଼ନା ତାକୁ ବିକାଶ ପଥରେ ଆଗେଇ ନିଏ । ଅବଶ୍ୟ ଏଥିରୁ ଅନେକେ ଭାବି ପାରନ୍ତି ଯେ ସାମାଜିକ ନିୟମାନୁଯାୟୀ ସମାଜବାଦ ଯେତେବେଳେ ଚରମ ପରିଣତି ସେତେବେଳେ ସମାଜବାଦ ପାଇଁ ଉଦ୍ୟମ କରିବାର ଆବଶ୍ୟକତା କଣ ଅଛି । କିନ୍ତୁ ତାହା ନୁହେଁ । ପୁଞ୍ଜିବାଦର ଧ୍ୱଂସ ଆପଣାଛାଏଁ ଆସିବ ନାହିଁ । ଏହା କେବଳ ଶ୍ରମିକର ଉତ୍କଟ ଶ୍ରେଣୀ-ସଂଗ୍ରାମ ଫଳରେହିଁ ସମ୍ଭବ । ସମାଜବାଦ ଧୀରେ ସୁସ୍ଥେ ଆପଣାଛାଏଁ ଆସିବ ବୋଲି ଯେଉଁମାନେ କହନ୍ତି ସେମାନେ ମଣିଷ ସମାଜକୁ ଅତ୍ୟାଚାରର ଚକ୍ରତଳେ ଅନ୍ତତଃ ଶହ ବର୍ଷ ପେଷି ହୋଇ ରହୁ ବୋଲି ଇଚ୍ଛା କରନ୍ତି ।

ତେଣୁ ଶ୍ରେଣୀ ସଂଗ୍ରାମର ପୂର୍ଣ୍ଣ ତାତ୍ପର୍ଯ୍ୟ ବୁଝିବାକୁ ହେଲେ ଶ୍ରେଣୀ-ସମାଜର ଅର୍ଥ ଓ ପୁଞ୍ଜିବାଦୀ ସମାଜ କିପରି ଅନ୍ୟ ସମାଜ ଠାରୁ ପୃଥକ ଓ ଶ୍ରେଣୀ-ସମାଜର ଉତ୍ପତ୍ତି ମଧ୍ୟ ଖୁବ୍ ଭଲ ଭାବରେ ବୁଝିବା ଦରକାର ।

# ଆଦିମ ସାମ୍ୟବାଦ

ଶ୍ରେଣୀ ସବୁଦିନେ ଥିଲା କି ?

ଆଜି ଆମ ସମାଜରେ ଆମ୍ଭେମାନେ ଧନୀ ଶ୍ରେଣୀ ଓ ଗରିବ ଖଟିଖିଆ ଶ୍ରେଣୀ ଏ ଦୁଇଟି ପ୍ରଧାନ ଶ୍ରେଣୀ ଦେଖୁଥାଉଁ । ତେବେ ଏହାହିଁ କଣ ପ୍ରକୃତିର ନିୟମ ? ଏପରି କଣ ମଣିଷ ସମାଜ ସବୁଦିନେ ଥିଲା ? ଦଳେ ସୁଖଭୋଗ କରୁଥିବେ ଓ ଆଉ ଦଳେ ଦୁଃଖକଷ୍ଟରେ ଦିନ କାଟୁଥିବେ ଏହାହିଁ କଣ ଚିରନ୍ତନ ନୀତି ।

ଏ ପ୍ରଶ୍ନର ଉତ୍ତର ଦେଉଥିବାବେଳେ ଆମ୍ଭମାନଙ୍କୁ ହଜାର ହଜାର ବର୍ଷ ତଳକୁ ଆଖି ପକାଇବାକୁ ହେବ । ଆମେ ଜାଣୁ ଯେ ମଣିଷ, ବାନରମାନଙ୍କର ବଂଶଧର । ବିଜ୍ଞାନ ଏହା ପ୍ରମାଣ କରିଛି । ଏହା ସର୍ବବାଦୀ ସମ୍ମତ ।

ଆଦିମ କାଳରେ ମଣିଷ ଦଳବଦ୍ଧ ଭାବରେ ବାସ କରୁଥିଲା । ସେତେବେଳେ ଶ୍ରେଣୀ ବିଭାଗ ନ ଥିଲା ବା ଗୋଟାଏ ଶ୍ରେଣୀ ଅନ୍ୟ ଗୋଟାଏ ଶ୍ରେଣୀ ଉପରେ ପ୍ରଭୁତ୍ୱ କରୁ ନ ଥିଲା । ମଣିଷ ସମାଜର ବିକାଶର ପ୍ରଥମ ଅବସ୍ଥାରେ ମଣିଷ ଏପରି ଦଳ ଦଳ ହୋଇ ରହୁଥିଲା । ଜଙ୍ଗଲରୁ ଖାଦ୍ୟ ଆହରଣ କରିବା, ଖରା ବର୍ଷାରୁ ନିଜକୁ ରକ୍ଷା କରିବା ଥିଲା ସେମାନଙ୍କର ପ୍ରଥମ ଓ ଏକମାତ୍ର କାମ । ଏଥିପାଇଁ ସମସ୍ତେ ଏକାଠି ହୋଇ ପରସ୍ପରକୁ ସାହାଯ୍ୟ କରୁଥିଲେ ।

ପ୍ରଥମେ ମଣିଷ ଗଛରେ ବାସ କରୁଥିଲା । ଖାଦ୍ୟ ଆହରଣ ପାଇଁ ତାକୁ ତଳକୁ ଆସିବାକୁ ପଡ଼ିଲା । ତେଣୁ କ୍ରମେ ସେ ଭୂମିରେ ରହିବାର ଆବଶ୍ୟକତା ଉପଲବ୍ଧି କଲା । ଝଡ଼ବର୍ଷାରୁ ରକ୍ଷା ପାଇବା ପାଇଁ ସେ ଗୁମ୍ଫାମାନଙ୍କରେ ବାସ କଲା । କିନ୍ତୁ ଗୁମ୍ଫା ପୁରାପୁରି ଭାବରେ ତାକୁ ଶୀତବର୍ଷାରୁ ରକ୍ଷା କରି ପାରିଲା ନାହିଁ । ଅହୁରି ମଧ୍ୟ କ୍ରମେ କ୍ରମେ ତାର ପିଲାଛୁଆ ବେଶୀ ହେଲେ, ବଂଶ ବୃଦ୍ଧି ହେବାରୁ ଗୁମ୍ଫାମାନଙ୍କରେ ଜାଗା ହେଲା ନାହିଁ । ତେଣୁ ସେ କୁଡ଼ିଆ କରିବାର ଆବଶ୍ୟକତା ବୋଧ କଲା ଓ କୁଡ଼ିଆ କରି ସେଥିରେ ବାସ କଲା । କିନ୍ତୁ ଘୂରିଅଟେଡ଼ି ଜଙ୍ଗଲ — ବାଘ, ସିଂହ ପ୍ରଭୃତି ହିଂସ୍ରଜନ୍ତୁରେ ଭରି; ସେଥିପାଇଁ ସେ ଠେଙ୍ଗା ବ୍ୟବହାର କଲା ଓ ତା ପରେ ପଥରକୁ ଘଷି ମୁନିଆ କରି ତାକୁ ଅସ୍ତ୍ର କଲା । ଏହାଦ୍ୱାରା ହିଂସ୍ରଜନ୍ତୁଙ୍କଠାରୁ ରକ୍ଷା ବି ପାଇଲା, ଅନ୍ୟ ଛୋଟ ଛୋଟ ଜୀବ ଶିକାର କରି ନିଜର ଖାଦ୍ୟ ମଧ୍ୟ ଯୋଗାଡ଼ କଲା । ଯୁଗ ଯୁଗ ଧରି ମଣିଷ ଏହିପରି ଭାବରେ ରହିଲା — ଯାହା ଶିକାର କରି ଆଣିଲା ବା ଯେଉଁ ଫଳମୂଳ ଆହରଣ କଲା ତାକୁ ସମସ୍ତେ ବାଣ୍ଟି କରି ଖାଇଲେ । ସମସ୍ତେ ପରିଶ୍ରମ କରି ଯେଉଁ ଲାଭ କଲେ ତାର ଫଳ ସମସ୍ତେ ସମାନ ଭାବରେ ଉପଭୋଗ କଲେ । ଏହାହିଁ ହେଲା ମାନବସମାଜ ବିକାଶର ଅତି ନିମ୍ନସ୍ତରର ସାମାଜିକ ଅବସ୍ଥା । ଏହାହିଁ ହେଉଛି ଆଦିମ ସାମ୍ୟବାଦ ।

ଏପରି ବ୍ୟବସ୍ଥା ଆମକୁ ଆଶ୍ଚର୍ଯ୍ୟ ଲାଗିବ ନାହିଁ । କାରଣ ଆମ ଦେଶରେ କେତେକ ସ୍ଥାନରେ ଆଜିକାଲି ମଧ୍ୟ, ଜଙ୍ଗଲରେ ଆଦିମ ଅଧିବାସୀମାନେ ବାସ କରନ୍ତି । ସେମାନଙ୍କର ଚାଲିଚଳଣି

ଅସ୍ତ୍ରର ବ୍ୟବହାର ଅନେକାଂଶରେ ଆଦିମ ସାମ୍ୟବାଦ ଯୁଗର ଅବସ୍ଥା ଥିଲା ।

ଏହି ଆଦିମ ସାମ୍ୟବାଦ ଯୁଗରେ ଶ୍ରେଣୀ ବିଭାଗ ବା ଶ୍ରେଣୀ ବ୍ୟବଧାନ ନ ଥିଲା । ଆଦିମ ସାମ୍ୟବାଦ ଯୁଗରେ ବିକାଶର ଗତି ଅତି ଶିଥିଳ ଥିଲା । ଶହ, ଶହ, ହଜାର, ହଜାର, ବର୍ଷଧରି ମଣିଷ ଏହିପରି ଆଦିମ ଅବସ୍ଥାରେ ରହି ଆସିଛି ଓ ତାର ସାମାଜିକ ଅବସ୍ଥାର ପରିବର୍ତ୍ତନ ଅତି ମନ୍ଥର ଗତିରେ ଚାଲିଛି । ତାର କାମ କରିବାର ପ୍ରଣାଳୀ ଓ ଉତ୍ପାଦନର ଉପକରଣ ଗୁଡ଼ିକର ପରିବର୍ତ୍ତନ ଧୀରେ ଧୀରେ ଭାବରେ ଚାଲିଥିଲା ।

ସ୍ୱତଃ ପ୍ରଶ୍ନ ଆସେ ଯେ, ସେତେବେଳେ ସମାଜର ସାମାଜିକ ସମ୍ବନ୍ଧ କଣ ଥିଲା ? ଏ କଥା ମନେ ରଖିବାକୁ ପଡ଼ିବ ଯେ ସେତେବେଳେ ଲୋକସଂଖ୍ୟା ଖୁବ୍ କମ୍ ଥିଲା । ଦଳ ଦଳ ହୋଇ ଗୋଟିଏ ଗୋଟିଏ ସ୍ଥାନରେ ଲୋକେ ବାସ କରୁଥିଲେ । ପୁରୁଷ ଶିକାର କରିବାକୁ ଯାଏ ଓ ସ୍ତ୍ରୀ ପିଲାକବିଲାଙ୍କୁ ହିଂସ୍ରଜନ୍ତୁଙ୍କଠାରୁ ରକ୍ଷା କରି ସେମାନଙ୍କ ଯତ୍ନ ନିଏ ଓ ଖାଦ୍ୟଶସ୍ୟ ତିଆରି କରେ । ଶିକାର ଯାହା ମିଳେ ଓ ଯାହା ଖାଦ୍ୟଶସ୍ୟ ତିଆରି ହୁଏ ସେ ସବୁ ସମସ୍ତଙ୍କ ଭିତରେ ବଣ୍ଟାଯାଏ । ଏଙ୍ଗେଲ୍‌ସ୍‌ଙ୍କ ଭାଷାରେ "ଶ୍ରମ ବିଭାଗ ଅତି ଆଦିମ ଧରଣର । ପୁରୁଷ ଓ ସ୍ତ୍ରୀ ଭିତରେ କାମ ବଣ୍ଟା ଯାଇଥିଲା । ପୁରୁଷର କାମ ଥିଲା ଯୁଦ୍ଧ କରିବା, ଶିକାର କରିବା, ମାଛ ମାରିବା, ଖାଦ୍ୟୋପଯୋଗୀ ଜିନିଷ ଯୋଗାଇବା ଓ ଉତ୍ପାଦନର ଉପକରଣ ଆଦି ତିଆରି କରିବା । ସ୍ତ୍ରୀ ଘରର ସମସ୍ତ କାର୍ଯ୍ୟ ବୁଝୁଥିଲା—ଖାଦ୍ୟ

ତଆର କରିବା, ଶିକାର କରିବା ଇତ୍ୟାଦି ଇତ୍ୟାଦି ଉଚ୍ଚିତ ।”
ପୁରୁଷ ଓ ସ୍ତ୍ରୀ ଉଭୟ ନିଜ ନିଜ କାର୍ଯ୍ୟକ୍ଷେତ୍ରରେ ପର୍ଯ୍ଯ
ଅଧିକାରୀ ଥିଲେ । ପୁରୁଷ ଜଙ୍ଗଲରେ, ସ୍ତ୍ରୀ ଘରେ—
ପୁରୁଷ ଶିକାର ଓ ମାଛମରା ଜିନିଷ ପାତିର ମାଲିକ ଥିଲା ।
ସ୍ତ୍ରୀ ଥିଲା ଘରର ଯାବତୀୟ ଆସବାବପତ୍ରର ମାଲିକ । କେତେ
ବା କେତେକ ପରିବାର ମିଶି ଗୋଟିଏ ପରିବାର ପରି
ସାମ୍ୟବାଦୀ ନୀତିରେ ଚଳୁଥିଲେ । ଯାହା ସମସ୍ତେ ମିଶି
ଉତ୍ପାଦନ ବା ବ୍ୟବହାର କରୁଥିଲେ ତାହା ସାଧାରଣ ସମ୍ପତ୍ତି
ବୋଲି ବିବେଚିତ ହେଉଥିଲା—ଘର, ବାଡ଼ି, ଡଙ୍ଗା ପ୍ରଭୃତି ।

ଆଦିମ ସାମ୍ୟବାଦ ଅବସ୍ଥାରେ ଶୋଷଣ ନ ଥିଲା ।
ବା ଦଳେ ଖଟୁଥିବେ ଓ ଅନ୍ୟ ଦଳେ ଲୋକ ନ ଖଟି ଅନ୍ୟର
ଉପାର୍ଜିତ ଧନରେ ନିଜେ ପୋଷି ହେଉଥିବେ ଏପରି ବ୍ୟବସ୍ଥା
ନ ଥିଲା । ଆଉ ମଧ୍ୟ ବ୍ୟକ୍ତିଗତ ସମ୍ପତ୍ତି ବୋଲି କୌଣସି
ଜିନିଷ ନ ଥିଲା । ଯେଉଁ ଜମି ଚାଷ ହେଉଥିଲା ସେ ସବୁର
ଅଧିକାରୀ ଥିଲା ଦଳ ବା ସମାଜ । ଉତ୍ପାଦନର ଉପକରଣ
ମଧ୍ୟ ଥିଲା ଅତି ସହଜ । ଖଣ୍ଡେ ତୀର, ଧନୁ ବା ବର୍ଚ୍ଛା
ତିଆରି କରିବା କୌଣସି କଷ୍ଟକର ବ୍ୟାପାର ନ ଥିଲା ।
ତେଣୁ ଉତ୍ପାଦନର ଉପକରଣ ଉପରେ ବ୍ୟକ୍ତିଗତ ସମ୍ପତ୍ତି
ବସାଇବାର ପ୍ରଶ୍ନ ଆସିବ କାହିଁ ? ଆଜି କାଲି ମଧ୍ୟ ଆମ୍ଭେମାନେ
ସେହି ଆଦିମ ସାମ୍ୟବାଦ ଯୁଗର ପ୍ରଥା ଗାଁମାନଙ୍କରେ
ଦେଖିବାକୁ ପାଉଁ । ଅନେକ ଗାଁରେ ପୋଖରୀ ସବୁ
ସର୍ବସାଧାରଣ ପୋଖରୀ । ଯେଉଁ ମାଛମରା ହେବ ତାହା ବଣ୍ଟା
ହୋଇ ସମସ୍ତେ ପାଇବେ । ଅନେକ ଜମି ଅଛି ଯାହାକୁ

ସର୍ବସାଧାରଣଙ୍କ ଜମି । ସମସ୍ତଙ୍କର ସେଥିରେ ଅଧିକାର ଅଛି । କ୍ରମେ ସେ ଜମିସବୁ ଟୋଟରରେ ପରିଣତ ହୋଇଯାଇଛି ମଧ୍ୟ ।

ଏଥିରୁ ଆମେ ସ୍ପଷ୍ଟ ଜାଣି ପାରୁଛୁ ଯେ ଶ୍ରେଣୀ ବିଭାଗ ପୂର୍ବରୁ ସମ୍ପତ୍ତି ବ୍ୟକ୍ତି ଅଧୀନରେ ନ ରହି ସର୍ବସାଧାରଣଙ୍କର ସମ୍ପତ୍ତି ହୋଇଥିଲା । ଆଦିମ ବର୍ବର ଅବସ୍ଥା ପରେ ଯେତେବେଳେ ଲୋକେ କୃଷି ବାସ କରିବାକୁ ଆରମ୍ଭ କଲେ ସେତେବେଳେ ମଧ୍ୟ ସମଷ୍ଟି ଭାବରେ ଲୋକେ କୃଷିବାସ କରୁଥିଲେ ଓ ତାର ଫଳ ସମସ୍ତେ ଉପଭୋଗ କରୁଥିଲେ ।

କିନ୍ତୁ ପୁଞ୍ଜିବାଦୀ ମିତବାଦୀମାନେ ଏହା ବୁଝି ପାରିଲେ ନାହିଁ ବା ବୁଝି ଅବୁଝା ହୋଉଛନ୍ତି । କାରଣ ସେମାନେ ସାମ୍ୟବାଦକୁ ମରଣ ଠାରୁ ବେଶି ଭୟ କରନ୍ତି । ସାମ୍ୟବାଦରେ ବ୍ୟକ୍ତିଗତ ସମ୍ପତ୍ତି ରହିବ ନାହିଁ—ଏହା ଭାବି ସେମାନଙ୍କର କଳିଜା ଥରି ଉଠେ । ସେମାନେ କହନ୍ତି, ମଣିଷ ବ୍ୟକ୍ତିଗତ ସମ୍ପତ୍ତି ନେଇ ଜନ୍ମ ହୋଇଛି । ଏ ଉକ୍ତି ଏକାବେଳକେ ଭୁଲ । ମଣିଷ ସମାଜର ଇତିହାସ ଏ ଭ୍ରାନ୍ତ ଧାରଣାକୁ ସ୍ଥାନ ଦିଏ ନାହିଁ । ଏହା କେବଳ ପୁଞ୍ଜିବାଦର ତୋଷାମଦକାରୀ ମିତବାଗୀଶ ମାନଙ୍କର ଉଦ୍ଭାବନ ।

ଅନେକ ସ୍ୱାର୍ଥପର ଅଜ୍ଞ ଲୋକ ସାମ୍ୟବାଦ ସମ୍ବନ୍ଧରେ ଜନସାଧାରଣଙ୍କ ମନରେ କିମ୍ଭୂତକିମାକାର ମିଥ ଓ ଭ୍ରାନ୍ତ ଧାରଣା ଜନ୍ମାଇଥାନ୍ତି । ବହୁଦିନ ତଳେ ମୋତେ ଜଣେ ଭଦ୍ରଲୋକ କହିଲେ ଯେ, ସାମ୍ୟବାଦ ହେଲେ ଲୋକମାନଙ୍କର ବହୁତ ଅସୁବିଧା ହେବ । ଯଦି ସାମ୍ୟବାଦୀ ସରକାର କୁହେ, ଯେ କେବଳ ତିନିଟଙ୍କ ଲେଖାଏଁ ପଟୋଳ କିଣ ସମସ୍ତେ

ଖାଇବେ, ତେବେ ସମସ୍ତେ ତାହାହିଁ ଖାଇବାକୁ ବାଧ୍ୟ; ଅନ୍ୟ
କିଛି ଖାଇ ପାରିବେ ନାହିଁ ବା ବେଶୀ ଖାଇ ପାରିବେ ନାହିଁ ।
କାରଣ ନୀତି ହେଉଛି ସାମ୍ୟବାଦ, ତେଣୁ ସେ ନୀତିରେ ସମସ୍ତେ
ସମାନ ଖାଇବେ । ଏପରି ବାଜେଇରକମର ପ୍ରଶ୍ନ ବା ଧାରଣାର
ଉତ୍ତର ଦେବା ମଧ୍ୟ ହାସ୍ୟାସ୍ପଦ କଥା । ସାମ୍ୟବାଦୀ ସମାଜରେ
ଉପଭୋଗ କରିବାର ସମସ୍ତ ସୁବିଧା, ସୁଯୋଗ ଓ ଅଧିକାର
ସମସ୍ତଙ୍କର ରହିଛି । ବରଂ ପୁଞ୍ଜିବାଦୀ ଯୁଗରେ ଯେ ଗରିବ ତାର
ଭଲ ଜିନିଷ ଖାଇବା, ଭଲ ପିନ୍ଧିବା, ଭଲରେ ରହିବାର ସୁବିଧା
ବା ସୁଯୋଗ ନାହିଁ । କିନ୍ତୁ ସାମ୍ୟବାଦୀ ସମାଜରେ ଗରିବ
ଧନୀର ପ୍ରଶ୍ନ ନାହିଁ । କାହାର ବ୍ୟକ୍ତିଗତ ରୁଚି ଅଭିଳାଷ
ଉପରେ ହସ୍ତକ୍ଷେପ କରିବା ସାମ୍ୟବାଦ ବିରୁଦ୍ଧ । ଅହୁରି ମଧ୍ୟ
ଅନେକେ ପ୍ରଶ୍ନ କରିଥାନ୍ତି ଯେ ସାମ୍ୟବାଦ ହେଲେ ବ୍ୟକ୍ତିଗତ
ସମ୍ପତ୍ତି ରହିବ ନାହିଁ—ସବୁ ସରକାରର । ଏ ଧାରଣା ମଧ୍ୟ
ଭୁଲ । ସାମ୍ୟବାଦୀ ସମାଜରେ ଉତ୍ପାଦନର ଉପକରଣ ଗୁଡ଼ିକ
ବ୍ୟକ୍ତିଗତ ସମ୍ପତ୍ତି ହୋଇ ରହିବ ନାହିଁ । ସେ ସବୁ
ସରକାରର । ଲୋକେ ମଟରକାର ରଖିପାରନ୍ତି କିନ୍ତୁ ମଟରକାର
ତିଆରି କାରଖାନା ନୁହେଁ—ଟଙ୍କା ପଇସା ରଖିପାରନ୍ତି କିନ୍ତୁ ଟଙ୍କା
ସୁଧ ଲଗାଇ ପାରିବେ ନାହିଁ । ସୁଖ ସଂଭୋଗ ପାଇଁ ଭଲ
ଘରେ ରହିପାରନ୍ତି କିନ୍ତୁ ବହୁତ ଘର ତିଆରି କରି ଭଡ଼ା ଦେଇ
ପାରିବେ ନାହିଁ ।

ପୁଣି ଏବେ ଜଣେ ଉଚ୍ଚ ଶିକ୍ଷିତ ଭଦ୍ରଲୋକ କହିଲେ ଯେ
ରୁଷରେ କେହି କାହାର ବାପ ନୁହନ୍ତି ବା କେହି କାହାର ପୁଅ
ନୁହନ୍ତି । ଏପରି ଧାରଣା ଯେ ଅତି ଅମଳକ ଏହା କହିବା

ବାତୁଳ୍ୟ ମାତ୍ର । * ସମାଜବାଦୀ ରୁଷର ଗାର୍ହସ୍ଥ୍ୟ ଜୀବନ ଅତି ସୁଖମୟ ଓ ବୈବାହିକ ସମ୍ବନ୍ଧ ଅତି ପବିତ୍ର । ମଣିଷ ଜୀବନକୁ କିପରି ସର୍ବାଙ୍ଗ ସୁନ୍ଦର କରିଯାଇପାରେ ତାହା ସୋଭିଏଟ ରୁଷର ସାମାଜିକ ଅର୍ଥନୈତିକ ଓ ରାଜନୈତିକ ଇତିହାସ ପଢ଼ିଲେ ଜଣାଯିବ । ତେବେ ଏଠାରେ ପଦେ ଅଧେ କହି ରଖିବା ଦରକାର ।

ଲେନିନ୍ଙ୍କ ଭାଷାରେ "ମଣିଷ, ସମାଜର ବାହାରେ କୌଣସି ଶକ୍ତିଠାରୁ ନୀତି ଗ୍ରହଣ କରିବା ଆମେ ଜାଣୁନା—ଏହା କେବଳ ଅପପ୍ରତାରଣା ମାତ୍ର ।......ସମାଜର ଉଚ୍ଚତର ସ୍ତର ଲାଭ କରିବା ପାଇଁ ଓ ଶୋଷଣରୁ ତ୍ରାଣ ପାଇବା ସକାଶେ ନୈତିକତା ମାନବ ସମାଜରେ ସହାୟକର କାର୍ଯ୍ୟ କରେ ।"

ଆମେରିକାର ଜଣେ ଲବ୍ଧପ୍ରତିଷ୍ଠ ନିରପେକ୍ଷ ଲେଖକ ମରିସ୍ ହିନ୍ଦସ୍ ୧୯୪୨ରେ ସୋଭିଏଟ ରୁଷକୁ ଯାଇ ତା ସମ୍ବନ୍ଧରେ 'ମଦର ରଷିଆ' ବୋଲି ଯେଉଁ ବହି ଲେଖିଛନ୍ତି ସେଥିରେ "ରୁଷ ଲୋକଙ୍କର ନୀତି" ଶୀର୍ଷକ ଲେଖାରୁ ନିମ୍ନଲିଖିତ କେତେକ ଅଂଶ ଦିଆଗଲା—

"ଲେନିନ ଏ ସମସ୍ୟାକୁ ସାମାଜିକ ଦୃଷ୍ଟିକୋଣରୁ ଦେଖିଛନ୍ତି । ନୂଆ ସମାଜର ଆବଶ୍ୟକତା ଉପରେ ନୀତି ପ୍ରତିଷ୍ଠିତ ହୋଇଛି—ଏଠାରେ ପୁରୁଷର ସାମାଜିକ ଓ ବୈବାହିକ ଅଧିକାର ଯାହା

---

* ସୋଭିଏଟ୍ ରୁଷ ବର୍ତ୍ତମାନ ପର୍ଯ୍ୟନ୍ତ ସାମ୍ୟବାଦୀ ହୋଇପାରି ନାହିଁ—ସମାଜବାଦୀ ଅବସ୍ଥାରେ ଅଛି । ସମାଜବାଦ [ସୋସିଅଲିଜମ୍]ର ପରବର୍ତ୍ତୀ ବା ଉଚ୍ଚତର ଅବସ୍ଥା ସାମ୍ୟବାଦ [କମ୍ୟୁନିଜମ୍] । ସମାଜବାଦୀ ଅବସ୍ଥାରେ ଲୋକ ତାର ପରିଶ୍ରମ ଅନୁଯାୟୀ ପାଏ ଓ ସାମ୍ୟବାଦୀ ଅବସ୍ଥାରେ ଲୋକ ତାର ଆବଶ୍ୟକ ଅନୁଯାୟୀ ପାଏ ।

ସ୍ତ୍ରୀର ମଧ୍ୟ ଠିକ୍ ସେଇଆ—ଅର୍ଥନୈତିକ ସୁବିଧା ହାସଲ କରିବା ଯେ ଏହାର ଲକ୍ଷ୍ୟ ତାହା ନୁହେଁ, ସମୂହର ସାମାଜିକ ଉନ୍ନତିହିଁ ଏକମାତ୍ର ନିର୍ଦ୍ଧାରିତ ଉଦ୍ଦେଶ୍ୟ ।”

“ରୁଷର ନୂଆ ନୀତି ଦ୍ୱାରା ଜୀବନଯାପନର ଧାରା ଉଚ୍ଛୃଙ୍ଖଳରୁ ହଟି ଯାଉଛି ଓ ଗୋଟିଏ ନିୟମରେ ପରିଣତ ହୋଇଛି । ପୁରୁଣା ଅଥଚ ସାର୍ବଜନୀନ ନୈତିକତା ଅଜି ମହତ୍ତ୍ୱର ହୋଇ ଉଠିଛି । ରୁଷର ଅଇନ ବହିରେ ଜନାକାଗ୍ମ ବୋଲି ଶବ୍ଦ ନାହିଁ । କିନ୍ତୁ ଯଦି କେହି ଅବୈଧ ପ୍ରଣୟରେ ଲିପ୍ତ ହେବାର ଦେଖାଗଲେ ତାର ଅଭି ଦୁଃଖର ସୀମା ନାହିଁ । ଥରେ ମୁଁ ମସ୍କୋର କମସୋମଲ ( ଯୁବକ କମ୍ୟୁନିଷ୍ଟ ଦଳ ) ର ଜଣେ ନେତାଙ୍କୁ ପଚାରିଲି ‘ତୁମେ ସବୁ ଅତି ଅଷ୍ଟର୍ଯ ଭାବରେ ନୈତିକ ହୋଇ ଯାଉଛ’ । ସେହି (ଯୁବତୀ) ହସି ଉତ୍ତର ଦେଲେ ‘ନା’ଅମେ ନୈତିକ ନୋହୁଁ ବା ନୈତିକତା ଶବ୍ଦ ପସନ୍ଦ କରୁନା’ । ସ୍ତ୍ରୀ ପୁରୁଷ ସଙ୍ଗମ ପାପ ବୋଲି ଅମେ କହୁନା । ଅମେ କେବଳ ବୈଧ ପ୍ରେମ ଭଲ ବୋଲି କହୁଁ । କାରଣ ବୈଧ ପ୍ରେମ ନିଜର ଓ ସମାଜର ଦାୟିତ୍ୱ ଓ ଉନ୍ନତି ଉପରେ ପ୍ରତିଷ୍ଠିତ ।

“ସୋଭିଏଟ ନୈତିକତାକୁ ଯେତେ ବାକ୍ୟାଡ଼ମ୍ବର ଦେଇ ଟେକିଲେ ବି ଏହା ରକ୍ଷଣଶୀଳ ନୈତିକତା ଛଡ଼ା ଆଉ ଅନ୍ୟ କିଛି ନୁହେଁ । କେବଳ ଏତିକି ଯେ ଏଥିରେ ପାପର ସଜ୍ଞା ନାହିଁ ।”

“ଜଣେ ଫାକ୍ଟରୀ କମସୋମଲ ନେତାଙ୍କୁ ମୁଁ ପଚାରିଲି ତୁମ ସଂଗଠନରେ ଯଦି ଏପରି କୌଣସି ପିଲା ଥାଏ ଯେ କି ଅଜି ଗୋଟିଏ ଝିଅ ସହିତ ସହବାସ କଲା ତ କାଲି ଆଉ ଗୋଟିଏ

ଟିଅ, ଅନ୍ୟଦିନ ଅଉ ଗୋଟିଏ ଟିଅ ସହିତ ସହବାସ କଲା ।
ତେବେ କଣ ହେବ ।"

ସେ କହିଲେ "ଆମେ ତାକୁ ସଙ୍ଗେ ସଙ୍ଗେ ବାହାର କରିଦେବୁ ।"

"ଅଉ ଗୋଟିଏ କମସୋମଲ୍ ନେତା କହିଲେ 'କେବଳ ଯେ ତାଙ୍କୁ ବାହାର କରିଦେବୁ ତା ନୁହେଁ; ସାଧାରଣ ସଭା, ଖବର କାଗଜ ଓ ଆମ ଖବର କାଗଜ କମସୋମଲ୍ସ୍କାୟା, ପ୍ରଭଦାରେ ଆମେ ତାଙ୍କୁ ଅପମାନିତ କରିବୁ ।" ରୁଷରେ ନୈତିକତା ଯେ କେତେ ଉଚ୍ଚସ୍ତରର ତାହା ଏଥିରୁ ସ୍ପଷ୍ଟ ବୁଝାଯିବ ।

ବର୍ତ୍ତମାନ ପୁଣି ସେହି ଆଦିମ ସମାଜ କଥା ଆଲୋଚନା କରାଯାଉ ।

ଲେନିନ କହିଛନ୍ତି ଯେ ଆଦିମ ସମାଜରେ ଲୋକ ଛୋଟ ଛୋଟ ଦଳ ହୋଇ ବାସ କରୁଥିଲେ । ବର୍ତ୍ତମାନର ସଭ୍ୟ ସମାଜରେ ଯେପରି ରାଷ୍ଟ୍ର ବା ସରକାର ଅଛି ତାହା ସେତେବେଳେ ନ ଥିଲା । ଯେତେବେଳେ ସମାଜରେ ଶ୍ରେଣୀ ବିଭାଗ ହେଲା ବା ଅନ୍ୟ କଥାରେ ଯେତେବେଳେ ଦଳେ ଲୋକ ଅନ୍ୟମାନଙ୍କ ପରିଶ୍ରମ ଦ୍ୱାରା ନିଜେ ପୁଷ୍ଟ ହେଲେ ସେତେବେଳେ ରାଷ୍ଟ୍ର ବା ସରକାରର ଉତ୍ପତ୍ତି ହେଲା । ତେଣୁ ଆମେ ଦେଖୁଛୁ ଯେ ଧନୀ ଓ ଗରିବ ଶ୍ରେଣୀ ବୋଲି କୌଣସି ଶରନ୍ତନ ପ୍ରଥା ନାହିଁ ବା ନ ଥିଲା । ଆଦିମ ସମାଜ ଯୁଗ ଯୁଗ ଧରି ବିନା ଶ୍ରେଣୀ ବିଭାଗରେ ଚାଲି ଆସିଅଛି ।

## ଶ୍ରେଣୀ ଓ ବିଭାଗ

ଆଦିମ ସମାଜର ଶକାଶ ଅତି ମନ୍ଥର ଗତିରେ ଚାଲି ଥିଲେ ମଧ୍ୟ ତାହା ଯେ ଏକାବେଳକେ ସ୍ଥାଣୁ ହୋଇ

ସ୍ଥିର ଓ ଅଚଳ ଥିଲା ତାହା ନୁହେଁ । ପ୍ରକୃତିର କୌଣସି ଜିନିଷ ସ୍ଥିର ହୋଇ ରହେ ନାହିଁ । ପ୍ରଗତି ପ୍ରକୃତିର ଧର୍ମ । କ୍ରମେ କ୍ରମେ ଆଦିମ ସମାଜର ଉତ୍ପାଦନର ଉପକରଣଗୁଡ଼ିକର ପରିବର୍ତ୍ତନ ଘଟିଲା । ପଥର ବଦଳରେ ଲୋକେ ଲୁହା ବ୍ୟବହାର କଲେ । ଠେଙ୍ଗା ଓ ପଥର ଜିନିଷ ପରିବର୍ତ୍ତେ କ୍ରମେ ଶର ଧନୁ ବ୍ୟବହାର ହେଲା ଓ ପ୍ରକୃତି ଠାରୁ ଅନେକ ଜିନିଷ ମଣିଷ ଆମଦାନୀ କଲା । ନିଆଁର ଆବିଷ୍କାର ଆଦିମ ସମାଜର ସାମାଜିକ ଜୀବନରେ ଅଦ୍ଭୁତ ପରିବର୍ତ୍ତନ ଆଣି ଦେଲା । କେବଳ ସେତିକି ନୁହେଁ ମଣିଷ ଧୀରେ ଧୀରେ ମାଟିର ହାଣ୍ଡି ମାଠିଆ ପ୍ରଭୃତି ତିଆରି କଲା । ପଶୁମାନଙ୍କୁ ଗୃହପାଳିତ କରିବା ପାଇଁ ଶିଖିଲା । ସାଧାରଣତଃ ପ୍ରଶ୍ନ ହୁଏ ଯେ ମଣିଷ ପଶୁମାନଙ୍କୁ ଗୃହପାଳିତ କଲା କିପରି ? ଆଦିମ ସମାଜରେ ମଣିଷ ଯେତେବେଳେ ଶିକାର କରିବାକୁ ଯାଉଥିଲା ସେତେବେଳେ ଜୀଅନ୍ତା ପଶୁ ଧରିବାରେ ବେଶୀ ସୁଖ ପାଉଥିଲା କାରଣ ଶିକାର ନ ମିଳିବା ବେଳେ ବା ଝଡ଼ ବର୍ଷା ଯୋଗୁଁ ଶିକାର କରି ଯିବା ପାଇଁ ଅସମ୍ଭବ ହୋଇ ପଡ଼ୁଥିବାବେଳେ ଘରେ ଥିବା ଜୀଅନ୍ତା ପଶୁ ମାରି ଖାଇବ, ଏହାହିଁ ହେଲା ଜୀଅନ୍ତା ପଶୁ ଧରି ରଖିବାର ଉଦ୍ଦେଶ୍ୟ । ଅନେକ ସମୟରେ ଆମ୍ଭେମାନେ ଜୀଅନ୍ତା ମାଛ ଆଣି ତାକୁ ପାଣିରେ ଜିଆଇ ପ୍ରତିଦିନ ଦରକାର ମୁତାବକ ଯେପରି ବ୍ୟବହାର କରୁ ଠିକ୍ ସେହିପରି । କ୍ରମେ ଏହି ପଶୁମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ଓ ମଣିଷ ଏମାନଙ୍କ ଠାରୁ ବହୁପ୍ରକାର ଉପକାର ଆଦାୟ କରିବା ଶିଖିଲା । ସେହିଦିନଠାରୁ ଗୋରୁ, ଗାଈ, ମଇଁଷି, ଛେଳି, ମେଣ୍ଢା ପ୍ରଭୃତି ହେଲେ ଗୃହପାଳିତ । ତେଣୁ ମଣିଷ ଯେତେବେଳେ

ପଶୁଙ୍କୁ ଗୃହପାଳିତ କରି ପାରିଲି ଓ ନିଆଁରେ ଲୁହା ପ୍ରଭୃତି ତରଳାଇ ପାରିଲି ସେତେବେଳେ ସମାଜ ଗୋଟାଏ ନୂଆ ସ୍ତରରେ ଆସି ପହଞ୍ଚିଲା । କିପରି ?

ଗୃହପାଳିତ ପଶୁଠାରୁ ଚମଡ଼ା, ପଶମ ପ୍ରଭୃତି ଜିନିଷକୁ ଆବଶ୍ୟକ ଦୃଷ୍ଟିରୁ କାମରେ ଲଗାଇବାକୁ ପଡ଼ିଲା—ଲୁହା ତରଳା ହେବାରୁ ତାହାଦ୍ୱାରା ବହୁ ରକମର ଜିନିଷ ତିଆରି ହେଲା । କାମ ସହଜ ହେଲା ଓ ବହୁବିଧ କାମର ବାଟ ଖୋଲିଗଲା । ତେଣୁ ସେହି ଲୋକ ସବୁ କାମ କରି ପାରିଲା ନାହିଁ । ଭିନ୍ନ ଭିନ୍ନ କାମ ଭିନ୍ନ ଭିନ୍ନ ଲୋକେ ଆଦରି ନେଲେ ଓ ସେହି ସେହି କାମରେ ବ୍ୟସ୍ତ ରହିଲେ । ତେଣୁ କାମ ଅନୁସାରେ ଲୋକେ ଭାଗ ଭାଗ ହୋଇଗଲେ । ଏଠିକିବେଳେହିଁ ଶ୍ରେଣୀ ବିଭାଗର ଆରମ୍ଭ । ଉତ୍ପାଦନ ପ୍ରଣାଳୀ ଯେତେବେଳେ ବିକାଶ ପାଇଲା, ସେତେବେଳେ ଲୋକେ କ୍ରମେ ବିଭିନ୍ନ ଶ୍ରେଣୀରେ ବିଭକ୍ତ ହେଲେ । ଦଳେ ଲୋକ କେବଳ ପଶୁଚାରଣ କଲେ । ଏମାନେ ଅନ୍ୟମାନଙ୍କଠାରୁ ପୃଥକ । ଏମାନଙ୍କର କାମ ହେଲା କେବଳ ପଶୁମାନଙ୍କୁ ଚରାଇବା ଓ ତାଙ୍କ ସଙ୍ଗେ ସଙ୍ଗେ ବୁଲିବା । ତଦ୍ୱାରା ସେମାନେ ଚମଡ଼ା ପଶମ ପ୍ରଭୃତି ଉତ୍ପାଦନ କଲେ । ସମାଜର ଅନ୍ୟମାନଙ୍କ ଠାରୁ ଚମଡ଼ା, ପଶମ ପ୍ରଭୃତି ବଦଳ ଦେଇ ଅନ୍ୟାନ୍ୟ ଜିନିଷ ଆଣିଲେ । ବଦଳ ପ୍ରଥାର ଆରମ୍ଭ ଏହିଠାରେ । ପ୍ରଥମେ ବିଭିନ୍ନ ଦଳ ଭିତରେ ବଦଳ ପ୍ରଥାର ଆରମ୍ଭ ହେଲା । ଏକା ଦଳର ଲୋକଙ୍କ ଭିତରେ ଏ ବଦଳ ପ୍ରଥା ଚାଲୁ ହୋଇ ନ ଥିଲା । କ୍ରମେ ଦଳର ଜନସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଆବଶ୍ୟକତା ମଧ୍ୟ ବଢ଼ିଲା । ଲୋକ ଦିନକୁ ଦିନ ବେଶୀ ବେଶୀ ଜିନିଷ

ଓ ଭଲ ଭଲ ଜିନିଷ ଉତ୍ପାଦନ କରିବାର ଆବଶ୍ୟକତା ଉପଲବ୍ଧି କଲା । ତେଣୁ ସେ ଉତ୍ପାଦନର ଉପକରଣ ଗୁଡ଼ିକୁ ଅଧିକ ଉନ୍ନତ ଧରଣର କରିବା ପାଇଁ ଚେଷ୍ଟା କଲା । ଆରମ୍ଭ ହେଲା କୃଷି । କୃଷି ଆରମ୍ଭ ହେବା ସଙ୍ଗେ ଲୋକର କୃଷି କରୁଥିବା ଜମି ସହିତ ଘନିଷ୍ଠ ସମ୍ବନ୍ଧ ବଢ଼ିଗଲା । ଜମିଟି ହେଲା ତାର ସବୁଠାରୁ ପ୍ରିୟ । ଏହିଠାରୁ ଆରମ୍ଭ ହେଲା ବ୍ୟକ୍ତିଗତ ସମ୍ପତ୍ତି । କୃଷି ଆରମ୍ଭ ହେବା ସଙ୍ଗେ କୃଷି ଉତ୍ପାଦନର ଉପକରଣ ତିଆରି କରିବାର ଆବଶ୍ୟକତା ପଡ଼ିଲା । କ୍ରମେ ଅନ୍ୟାନ୍ୟ କୁଟୀର ଶିଳ୍ପ ମଧ୍ୟ ତିଆରି କରିବାର ଆବଶ୍ୟକତା ଉପଲବ୍ଧି ହେଲା ଓ ବହୁ ପରିମାଣରେ ଜିନିଷ ତିଆରି ହେଲା ।

ଏଠାରେ ମନେ ରଖିବାକୁ ହେବ ଯେ କୃଷି ଓ ପଶୁଚାରଣ ବଢ଼ିବା ସଙ୍ଗେ ସଙ୍ଗେ ଯୁଦ୍ଧ ମଧ୍ୟ ଆରମ୍ଭ ହେଲା । ଯେଉଁ ଦଳେ ଲୋକ କୃଷି ପାଇଁ ଜଙ୍ଗଲ କାଟି ଫସଲ ତିଆରି କରିବା ପାଇଁ ବସିଲେ ବା ପଶୁଚାରଣ ପାଇଁ ନିଜର ସୀମା ଭିତରେ ନ ରହି ବେଶୀଦୂର ମାଡ଼ିଯିବା ଦ୍ୱାରା କିଛି ଦୂରରେ ବାସ କରୁଥିବା ଅନ୍ୟ ଦଳେ ଲୋକଙ୍କ ସ୍ୱାର୍ଥରେ ବାଧା ଆଣିଲେ; ସେ ଦଳ ଏ ଦଳଙ୍କ ଭିତରେ ଯୁଦ୍ଧ ହେଲା । ଯେଉଁ ଦଳ ହାରିଗଲା ସେ ଦଳ ମଧ୍ୟରୁ ଅନେକଙ୍କୁ ବନ୍ଦୀ କରି ନିଆଗଲା । ଏହି ବନ୍ଦୀମାନେ ବିଜେତା ଦଳର ଦଳପତି ପ୍ରଭୃତି କେତେକ ପ୍ରତିପତ୍ତିଶାଳୀ ଲୋକଙ୍କର ଦାସ ହୋଇ ରହିଲେ । ଏହିପରି ଦାସ ପ୍ରଥା ଆରମ୍ଭ ହେଲା । ଏହି ଦାସମାନେ ଉତ୍ପାଦନ ପ୍ରଣାଳୀରେ ବିଶେଷ ସାହାଯ୍ୟ କଲେ ଓ କ୍ରମେ ଏହି ଦାସମାନଙ୍କ ପରିଶ୍ରମରେ ଅନେକ ଜିନିଷ ଉତ୍ପାଦିତ ହୋଇ ପାରିଲା । ଏହିଠାରୁ ଆରମ୍ଭ ହେଲା ଅସମାନତା ଅର୍ଥାତ୍ କେତେକଜଣଙ୍କ ପରିଶ୍ରମରେ ଅନ୍ୟ କେତେଜଣ ଲାଭ ମାରି

ସମୃଦ୍ଧିଶାଳୀ ଓ ଧନୀ ହୋଇ ଦଳରେ ରହିଲେ ଓ ଆଉ କେତେ-
ଜଣ ଗରିବ ହୋଇ ରହିଲେ ।

ପ୍ରଭୁ ଓ ଦାସ ବା ଶୋଷକ ଓ ଶୋଷିତ ଏହିଠାରୁ ଆରମ୍ଭ
ହେଲା । ବିଭିନ୍ନ ସ୍ୱାର୍ଥ ଓ ସ୍ତର ଅନୁଯାୟୀ ନାନା ରକମର
ଜନପଦର ସୃଷ୍ଟି ମଧ୍ୟ ହେଲା । କ୍ରମେ ଯୁଦ୍ଧ ପାଇଁ ଓ ଅନ୍ୟାନ୍ୟ
ବହୁପ୍ରକାର ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନର ଆବଶ୍ୟକତା ହେଲା ।
ଯଥା ଯୁଦ୍ଧ ପାଇଁ ଅସ୍ତ୍ର, ବାସନକୁସନ ନାନାପ୍ରକାର ଉତ୍ପା-
ଦନର ଉପକରଣ ପ୍ରସ୍ତୁତ । ତେଣୁ କୃଷି ଶ୍ରେଣୀ ଛଡ଼ା
କାରଗର ଶ୍ରେଣୀର ଜନ୍ମ ହେଲା । ଆଦମ ସାମ୍ୟବାଦର
ଲୋପ ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସମ୍ପତ୍ତିର ଆରମ୍ଭ ହେଲା ।
ଜମି, ପଶୁ, ଓ ଉତ୍ପାଦନର ଉପକରଣ ପ୍ରଭୃତି ବ୍ୟକ୍ତିଗତ
ସମ୍ପତ୍ତିରେ ପରିଣତ ହେଲା ।

ଦାସ ପ୍ରଥା ଆରମ୍ଭ ହେବା ସଙ୍ଗେ ସଙ୍ଗେ ଉତ୍ପାଦନର
ପରିମାଣ ବଢିବାକୁ ଲାଗିଲା । ଦାସ ଯୁଗରେ ଦାସ ବା ଗୋଲାମ
ତାର ପ୍ରଭୁର ଗୋଟିଏ ଉତ୍ପାଦନକାରୀ ଯନ୍ତ୍ର ଭାବରେ କାମ କଲା ।
ପ୍ରଭୁ ଇଚ୍ଛା କଲେ ତାର ଗୋଲାମ ବା ଦାସକୁ ଜୀବନରେ
ମାରି ଦେଇପାରେ । ଅନ୍ୟାନ୍ୟ ବ୍ୟକ୍ତିଗତ ସମ୍ପତ୍ତି ପରି ଦାସ
ପ୍ରଭୁର ବ୍ୟକ୍ତିଗତ ସମ୍ପତ୍ତି । ଭିନ୍ନ ଭିନ୍ନ ଦେଶରେ ଦାସ ପ୍ରଥା
ଭିନ୍ନ ଭିନ୍ନ ରୂପ ନେଇଛି ମାତ୍ର; ଏହି ଦାସ ଯୁଗରେ ଉତ୍ପାଦନର
ପ୍ରଣାଳୀ ଆଦମ ସାମ୍ୟବାଦ ଯୁଗଠାରୁ ଭିନ୍ନ । କାରଣ—ଦାସ
ଯୁଗରେ ଦାସ ଦ୍ୱାରା ବହୁପରିମାଣରେ ଜନପଦ ପଥ ତିଆରି
କରାଯାଇପାରିଲା । ଅସ୍ତ୍ରଶସ୍ତ୍ରର ବ୍ୟବହାର ହେଲା । ଗୋଟିଏ
ନୂଆ କାରଗର ଶ୍ରେଣୀ ବାହାରି ପଡ଼ିଲେ । ବ୍ୟକ୍ତିଗତ ସମ୍ପତ୍ତିର

ମୂଳହୁଅ ପଡ଼ିଲା ଅଦଳ ବଦଳ ପ୍ରଥା ଆରମ୍ଭ ହେବାକୁ ଲାଗିଲା—ଜାତି ସମାଜ ଭିତରେ ଓ ବାହାର ସମାଜ ଭିତରେ ।

ତେଣୁ ଧନୀ ଓ ଗରିବ, ଶୋଷକ ଓ ଶୋଷିତ, ଅଧିକାର ଥିବା ଲୋକ ଓ ଅଧିକାର ନ ଥିବା ଲୋକ ଏ ହେଲା ଦାସ ଯୁଗର ଚିତ୍ର—ଶ୍ରେଣୀ-ସଂଘର୍ଷର ଆରମ୍ଭ । ଦାସଯୁଗ ବହୁ ଶତାବ୍ଦୀ ଧରି ଲାଗି ରହିଥିଲା । ସମାଜର ବିକାଶ ଓ ଉନ୍ନତି ଅତି କ୍ଷୀଣ ଭାବରେ ଚାଲିଥିଲା । ପ୍ରାକୃତିକ ପ୍ରତିବନ୍ଧକକୁ ଏଡ଼ି ଉତ୍ପାଦନର ପରସ୍ପର ଓ ବାହାର ସମାଜ ସହିତ ଓ ଦଳ ସହିତ ଆଦାନପ୍ରଦାନର ସୁବିଧା ହାସଲ କରିବାରେ ବିଶେଷ ସକ୍ଷମ ହୋଇ ପାରି ନ ଥିଲା । ନଈ, ନାଳ, ପାହାଡ଼, ପର୍ବତ, ଜଙ୍ଗଲ ପ୍ରଭୃତି ସେତେବେଳର ମଣିଷ ଆଗରେ ଗୋଟିଏ ଗୋଟିଏ ଅନତିକ୍ରମଣୀୟ ଦୁର୍ଗ ବୋଲି ବିବେଚିତ ହେଉଥିଲା । କିନ୍ତୁ ଦାସମାନଙ୍କର ଅସନ୍ତୋଷ ବଢ଼ିବା ସଙ୍ଗେ ସଙ୍ଗେ ସମାଜକୁ ଉନ୍ନତ ଓ ବିକାଶ ଦିଗରେ ଆଗେଇବାର ପ୍ରବଳ ଆକାଂକ୍ଷା ମଧ୍ୟ ଅନୁଭୂତ ହେଉଥିଲା । ଦାସ ବା ଗୋଲାମ ଯେଉଁ ଜିନିଷ ତିଆରି କରେ ସେଥିରେ ତାର କୌଣସି ସ୍ୱାର୍ଥ ନ ଥାଏ । ସେଥିରେ ସେ କୌଣସି ମସ୍ତିଷ୍କ ଖଟାଏ ନାହିଁ ବା ଜିନିଷଟି କିପରି ଭଲ ହେବ ସେଥିପ୍ରତି ଚେଷ୍ଟା କରେ ନାହିଁ । କାରଣ—ଜିନିଷ ଭଲ ମନ୍ଦ ହେବାରେ ତାର ଯାଏ ଆସେ କେତେ ? ସେ କେବଳ ଗୋଟିଏ ଭଲ ବଳଦ ଭଳି କାମ କରି ଚାଲିଯାଏ, ତାର ପ୍ରଭୁ ପାଇଁ । ତେଣୁ ଜିନିଷକୁ ଭଲ ବା ଉନ୍ନତ ଧରଣର କରିବାକୁ ହେଲେ ଯେ, ଜିନିଷ ତିଆରି କରିବ ବା ଉତ୍ପାଦନ କରିବ ତାର ସେଥିରେ ସ୍ୱାର୍ଥ ରହିବା ଦରକାର । ସେଥିପାଇଁ ଶ୍ରମିକର କାର୍ଯ୍ୟ ପ୍ରତି ରୁଚି ଓ ଆସକ୍ତ ହେବା ବାଞ୍ଛନୀୟ । ଉତ୍ପାଦିତ ଦ୍ରବ୍ୟରେ ଯଦି ତାର ସ୍ୱାର୍ଥ ନ ଥାଏ ତା'ହେଲେ ସେ

ଅନୁଗ୍ରହ ଓ ବୁଦ୍ଧିର ସ୍ୱତନ୍ତ୍ର ପରିଶ୍ରମ କରି ପାରିବ ନାହିଁ । ଅପେକ୍ଷାକୃତ ଅନୁଗ୍ରହରେ ଜନଷ ଉତ୍ପାଦନ କରି ପାରିବ ବୋଲି ଦାସକୁ କ୍ରମେ ସାମାନ୍ୟ ସ୍ୱାତନ୍ତ୍ର୍ୟ ଦିଆଗଲା । ପ୍ରଭୁ ପାଇଁ ଚାଷ କଲା ନିଜର ପିଲାକବିଲାଙ୍କ ପାଇଁ ମଧ୍ୟ କିଛି ରଖିଲା । ଦାସର ପ୍ରଭୁ କ୍ରମେ ସାମନ୍ତବାଦୀ ପ୍ରଭୁ ରୂପରେ ପରିଣତ ହେଲା । ଏହାହିଁ ହେଲା ସାମନ୍ତବାଦୀ ଯୁଗର ଆରମ୍ଭ ।

## ସାମନ୍ତବାଦୀ ଯୁଗ

ଏହି ସାମନ୍ତବାଦୀ ଯୁଗରେ ରାଜା ବା ଜମିଦାର ଜମିର ମାଲିକ । ରାଜା ବା ଜମିଦାର ପାଇଁ ପ୍ରଜା ଚାଷ କରେ । ବହୁ ପ୍ରକାରର ବେଠି ବେଗାରି ଖଟେ, ନାନା ଅତ୍ୟାଚାର ଓ କଷଣ ସହେ । ଦାସଯୁଗଠାରୁ ଏ ଯୁଗର ପାର୍ଥକ୍ୟ ଏତିକି ଯେ, ସାମନ୍ତବାଦୀ ଯୁଗରେ ରାଜା ବା ଜମିଦାର ପ୍ରଜାକୁ ଇଚ୍ଛା ମୁତାବକ ଜୀବନରେ ମାରି ଦେଇ ପାରିବ ନାହିଁ; ଓ ପ୍ରଜା ଜମି ଚାଷ କରି ନିଜର ପିଲା ଛୁଆଙ୍କ ପାଇଁ କିଛି ରଖିପାରିବ ।

ଏହି ଯୁଗରେ ବ୍ୟବସାୟ ବୃଦ୍ଧିପାଏ । ବଣିକର ପୁଞ୍ଜି ବିକାଶ ପାଏ । ଟଙ୍କାର ଗୁରୁତ୍ୱ ବଢ଼େ । ବଣିକମାନେ ବିଭିନ୍ନ ସ୍ଥାନରେ ବ୍ୟବସାୟ କରିବା ପାଇଁ ଯାଆନ୍ତି । ବୋଇତ ବନ୍ଦାଇ ଆମର ଏହି ଓଡ଼ିଶାର 'ସାଧବ'ମାନେ (ବଣିକ ସମାଜ) ବାଲି, ସୁମାତ୍ରା ପ୍ରଭୃତି ଦ୍ୱୀପକୁ ବ୍ୟବସାୟ ପାଇଁ ଯାଉଥିଲେ । ଏଇ ବଣିକ ସମାଜର ବ୍ୟବସାୟ ରାଜା ଜମିଦାରମାନଙ୍କ ସଙ୍ଗେ ଚଳୁଥିଲା । କେଣୁ ରାଜା ଜମିଦାରମାନେ ପ୍ରଜାମାନଙ୍କ-ଠାରୁ ଯେତେତେପ୍ରକାର ଶୋଷଣ କରି ପାରନ୍ତି ସେତେ ସେମାନଙ୍କର ଲାଭ । ବଣିକର ପୁଞ୍ଜି ବଢ଼ିବା ସଙ୍ଗେ ସଙ୍ଗେ ଓ

ସାମନ୍ତବାଦୀ ସମାଜର ବିକାଶ ସଙ୍ଗେ ସଙ୍ଗେ ସାମନ୍ତବାଦୀ ପ୍ରଭୁମାନେ ଦରିଦ୍ର ପ୍ରଜାଙ୍କ ଉପରେ ବହୁ ପ୍ରକାରେ ଉତ୍କଟ ଶୋଷଣ ଚଳାନ୍ତି । ଆମରି ଏଇ ସାମନ୍ତବାଦୀ ଦେଶ ଓଡ଼ିଶା ଭୂଇଁରେ ଏହାର ଉଦାହରଣ ଗଡ଼ଜାତ ରଜା ଓ ପ୍ରଜା ଓ ମୋଗଲବନ୍ଦୀର ଜମିଦାର-ଶ୍ରେଣୀ ଓ ପ୍ରଜା-ଶ୍ରେଣୀ ।

ଫ୍ରାନ୍ସ, ଇଂଲଣ୍ଡ, ଜର୍ମାନୀ ଓ ରୁଷିଆ ପ୍ରଭୃତି ଦେଶରେ ସାମନ୍ତବାଦୀମାନଙ୍କ ବିରୁଦ୍ଧରେ ବହୁ ବିପ୍ଳବ ଓ ବହୁ ଆନ୍ଦୋଳନ ହୋଇ ଯାଇଛି । ଆମର ଭାରତରେ ମଧ୍ୟ ତାର ଦୃଷ୍ଟାନ୍ତ କମ ନାହିଁ । ଫ୍ରାନ୍ସ ପ୍ରଭୃତି ଦେଶରେ ସାମନ୍ତବାଦୀମାନଙ୍କ ବିରୁଦ୍ଧରେ ହୋଇଥିବା ବିପ୍ଳବରେ ଶିଳ୍ପପତିମାନେ ସାହାଯ୍ୟ କରନ୍ତି । କାରଣ ସାମନ୍ତବାଦୀ ସମାଜ ଖସି ପଡ଼ିଲେ ପୁଞ୍ଜିବାଦୀ ସମାଜରେ ପୁଞ୍ଜିପତିମାନେ କଳକାରଖାନା କରିଅଟରେ ଲୋକଙ୍କୁ ଖଟାଇ ବେଶୀ ଲାଭ କରି ପାରିବେ ।

ଏଇ ସାମନ୍ତବାଦୀ ଯୁଗରେ ବ୍ୟବସାୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଆବଶ୍ୟକତା ମଧ୍ୟ ବୃଦ୍ଧି ପାଇଲା । ଯନ୍ତ୍ରପାତି ଉଦ୍ଭାବନ ହେଲା । ଲୋକ ଯେତେବେଳେ ଦୂର ଦେଶ ସହିତ ସମ୍ପର୍କ ରଖିଲେ, ବ୍ୟବସାୟ କଲେ, ସେତେବେଳେ ଲାଭର କମ ସମୟ ଭିତରେ ସହଜରେ କାମ ଓ ସୁବିଧା ହାସଲ ହୋଇ ପାରିବ ଏଥିପାଇଁ ସେ ଚିନ୍ତାଶୀଳ ହେଲେ । ଆବଶ୍ୟକତା ଅନୁଯାୟୀ ମଣିଷ ଯନ୍ତ୍ରପାତି ତିଆରି କରିବା ପାଇଁ ଲାଗିଲା । ଡଙ୍ଗା ପରିବର୍ତ୍ତେ ଉନ୍ନତ ଧରଣର ବୋଟ ତିଆରି କଲା । ତାପରେ କ୍ରମେ କ୍ରମେ କଳକାରଖାନାର ହେଲା ଆରମ୍ଭ । ଏ ସବୁ ତିଆରି କରିବାକୁ ହେଲାରୁ ଶିକ୍ଷିତ ଓ ବୁଦ୍ଧିମାନ ଶ୍ରମିକଙ୍କର ଆବଶ୍ୟକତା ବଢ଼ିଲା ।

ଯେଉଁମାନଙ୍କର ଅନ୍ତତଃ ଟିକିଏ ବିଦ୍ୟା ବୁଦ୍ଧି ଥିବ, କଳକବ୍‌ଜା ଚଳାଇବା ପାଇଁ ସାଧାରଣ ଜ୍ଞାନ ଥିବ ସେଇମାନେହିଁ କେବଳ ଏଥିପାଇଁ ଲୋଡ଼ା ହେଲେ । ସାମନ୍ତବାଦୀ ଯୁଗରେ ପ୍ରଜା ବା କୃଷୀ, ଯେହେତୁ ଅଶିକ୍ଷିତ ଓ କୁସଂସ୍କାରାଚ୍ଛନ୍ନ ଥିଲେ ତେଣୁ ସେମାନଙ୍କ ଅପେକ୍ଷା ଶିକ୍ଷିତ ଓ ବୁଦ୍ଧିମାନ ଲୋକଙ୍କର ଦରକାର ପଡ଼ିଲା । ଶିକ୍ଷାର ପ୍ରଚାର ହେଲା । କଳ କାରଖାନା ଖୋଲା ହେଲା । ଆରମ୍ଭ ହେଲା ପୁଞ୍ଜିବାଦୀ ସମାଜ ।

## ପୁଞ୍ଜିବାଦୀ ସମାଜ

ପୁଞ୍ଜିବାଦ କହିଲେ କଣ ବୁଝାଯାଏ ?

ପୁଞ୍ଜିବାଦ ହେଉଛି ଏକ ଅର୍ଥନୈତିକ ପ୍ରଥା ଯାହାଦ୍ୱାରା କଳକାରଖାନା, ରେଲ, ମେସିନ, ବ୍ୟାଙ୍କ, ଖଣି, ଇଷ୍ଟେଟ ପ୍ରଭୃତି ଜଣେ ବା କେତେକ ଜଣଙ୍କର ଅଧୀନରେ ଥାଏ ।

( ପୁଞ୍ଜିବାଦର ମୂଳଦୂଆ ଶୋଷଣ । ) ଏହି କଳକାରଖାନା ଖଣି ପ୍ରଭୃତି ଯେଉଁମାନଙ୍କ ଅଧୀନରେ ଥାଏ ଓ ଯେଉଁମାନେ ଏଥିରୁ ଲାଭ ଉଠାନ୍ତି ସେମାନେ ହେଲେ ପୁଞ୍ଜିବାଦୀ । ତେଣୁ ପୁଞ୍ଜିବାଦୀ ଶ୍ରେଣୀ ଏହି ସବୁ କଳକାରଖାନା ରେଲ, ଖଣି ବ୍ୟାଙ୍କ ପ୍ରଭୃତିର ମାଲିକ ।

ଏହି କଳକାରଖାନା ପ୍ରଭୃତି ବହୁତ ଜିନିଷ ଉତ୍ପାଦନ କରନ୍ତି । ମିଲ ବା କଳ ମାଲିକ ଯେ, ସବୁ ଜିନିଷ ନିଜ ପାଇଁ ତିଆରି କରେ ତାହା ନୁହେଁ । ସେ ଚାହେଁ ଏ ଜିନିଷତକ ବଜାରରେ ବିକି କରି ସେଥିରୁ ଲାଭ ନେବ । ତେଣୁ ତାର ଲାଭ ଦରକାର । ଆମେ ଏଥିରୁ ବୁଝି ପାରୁଛୁ ଯେ, କଳ ବା ମିଲ ମାଲିକ ଲାଭ ପାଇଁ ଏ ସବୁ ତିଆରି କରେ ।

ମନେକର, ଗୋଟିଏ ତେଲ କଳର ମାଲିକ ଖାଲି ନଡ଼ିଆ ତେଲ ତିଆରି କରେ ବା ଗୋଟିଏ ମଟର କାରଖାନା ଖାଲି ମଟର ତିଆରି କରେ । କଳ ବା କାରଖାନା ମାଲିକ କଣ ସବୁଯାକ ନଡ଼ିଆ ତେଲ ନିଜେ ଲଗାଏ ? ବା ସବୁ ମଟରକାର ନିଜେ ବ୍ୟବହାର କରିବା ପାଇଁ ତିଆରି କରେ ? ନା, ତାହା କରେ ନାହିଁ । ତେବେ ସେ ଏତେ ତାହିଁକି ତିଆରି କରେ ? ଏ ସବୁ ଉତ୍ପନ୍ନ ଦ୍ରବ୍ୟ ବଜାରରେ ବିକି ଲାଭ କରିବା ପାଇଁ । ତେଣୁ ଏ ସବୁ ଦ୍ରବ୍ୟ ବିକାକିଣା ପାଇଁ ତିଆରି ହୁଏ । ବଜାରରେ ବିକି ଲାଭ କରିବା ଉଦ୍ଦେଶ୍ୟରେ ପରିଶ୍ରମ କରି ଯେଉଁ ଦ୍ରବ୍ୟ ଉତ୍ପନ୍ନ କରାଗଲା ତାହାକୁ ପଣ୍ୟଦ୍ରବ୍ୟ କହନ୍ତି ।

ତେଣୁ ପୁଞ୍ଜିବାଦୀ ଅର୍ଥନୀତି ହେଉଛି ପଣ୍ୟଦ୍ରବ୍ୟ ଅର୍ଥନୀତି ।

ତାହାହେଲେ ପ୍ରତ୍ୟେକ ପଣ୍ୟଦ୍ରବ୍ୟ କଣ ପୁଞ୍ଜିବାଦୀ ଅର୍ଥନୀତି ଭିତରେ ଯିବ ? ଅର୍ଥାତ୍ ବଜାରରେ ବିକି ଲାଭ କରିବା ଯଦି ପୁଞ୍ଜିବାଦ ହେଲା ତେବେ ଯେ ବଜାରରେ ଜିନିଷ ବିକନ୍ତି ସେ କଣ ଜଣେ ପୁଞ୍ଜିବାଦୀ ? ମନେକର, ଗୋବ ପାନ ଦୋକାନୀ ବା ହରିଆ ମୋଚି ନିଜେ ପରିଶ୍ରମ କରି ନିଜର ଉପକରଣ ଦ୍ୱାରା ପାନ ବା ଯୋତା ତିଆରି କରି ବଜାରରେ ବିକି ଲାଭ କଲା— ତାହାହେଲେ ଆମେ କଣ କହିବା ଯେ ଗୋବ ଓ ହରିଆ ଗୋଟିଏ ଗୋଟିଏ ପୁଞ୍ଜିବାଦୀ ? ଅବଶ୍ୟ ଏମାନେ ଯେଉଁ ଜିନିଷ ତିଆରି କଲେ ଏହା ପଣ୍ୟଦ୍ରବ୍ୟ ବୋଲି କୁହାଯିବ । କିନ୍ତୁ ଏହା ପୁଞ୍ଜିବାଦୀ ପଣ୍ୟଦ୍ରବ୍ୟ Capitalist commodity ନୁହେଁ କାହିଁକି ? କାରଣ, ଏମାନେ ଅନ୍ୟର ପରିଶ୍ରମରେ ନିଜେ ଲାଭ କରୁ ନାହାନ୍ତି । ଏମାନେ ଯଦି କେତେ ଲୋକ ଲଗାଇ ମଜୁରି ଦେଇ

ସେମାନଙ୍କ ପରିଶ୍ରମରେ ଜିନିଷ ତିଆରି କରି ବଜାରରେ ବିକ୍ରି ଲାଭ କରୁଥାଆନ୍ତି ତେବେ ସେମାନଙ୍କୁ ପୁଞ୍ଜିବାଦୀ କୁହାଯାଆନ୍ତି । ସେତେବେଳେ ଆମେ ସେମାନଙ୍କୁ ଶୋଷକ ବୋଲି କହୁନ୍ତେ । କାରଣ ଅନ୍ୟର ପରିଶ୍ରମରେ ସେମାନେ ଲାଭବାନ ହେଉଛନ୍ତି । ତେଣୁ ସେମାନେ ଅନ୍ୟଙ୍କୁ ଶୋଷଣ କଲେ । ସେହି-ପରି ଜଣେ ମଧ୍ୟବିତ୍ତ ଶ୍ରେଣୀର ଚାଷୀ ଯଦି ନିଜେ ତାର ପରିବାରଙ୍କ ସାହାଯ୍ୟରେ ନିଜର ହଳ, ଲଙ୍ଗଳ ଓ ବଳଦ ଦ୍ୱାରା ଜମି ଚାଷ କରି ଉତ୍ପନ୍ନ ଧାନ ବଜାରରେ ବିକେ ତେବେ ସେ ପୁଞ୍ଜିବାଦୀ ନୁହେଁ । ସେ ଜଣେ ସାଧାରଣ ପଣ୍ୟଦ୍ରବ୍ୟ ଉତ୍ପାଦକ । କିନ୍ତୁ ଯେଉଁ ସବୁ ବଡ଼ ବଡ଼ ଚାଷୀମାନେ କୁଲି ମଜୁରିଆ ଲଗାଇ କୃଷି ଉତ୍ପାଦନ କରନ୍ତି, ଲୋକମାନଙ୍କୁ କରଜ, ଦେଢ଼ି ପ୍ରଭୃତି ଦଅନ୍ତି ସେମାନେ ପୁଞ୍ଜିବାଦୀ । ସେମାନଙ୍କୁ ଗ୍ରାମ୍ୟ ପୁଞ୍ଜିବାଦୀ ମଧ୍ୟ କୁହାଯାଏ ।

ଆମ ମଣିଷ ସମାଜରେ ଏପରି ପୁଞ୍ଜିବାଦୀଙ୍କ ସଂଖ୍ୟା ଖୁବ୍ କମ୍ । କିନ୍ତୁ କମ୍ ହେଲେ କଣ ହେବ, ସେମାନଙ୍କ ହାତରେ ସବୁକାଠି । ସେହିମାନେହିଁ କଳ, ମିଲ, ଫାକ୍ଟେରୀ, ବ୍ୟାଙ୍କ, ଜମି ଯାବତୀୟ ଉତ୍ପାଦନ ଉପକରଣଗୁଡ଼ିକର ମାଲିକ । ତେଣୁ ହଜାର ହଜାର ଲୋକ ତାଙ୍କର ମଜୁରୀ ଖଟନ୍ତି । ଏ ଯେଉଁ ହଜାର ହଜାର ଲୋକ ଖଟି ଖାଆନ୍ତି ସେମାନଙ୍କର ଏହି ଉତ୍ପାଦନର ଉପକରଣଗୁଡ଼ିକରେ କିଛି ଭାଗ ନାହିଁ । ସେମାନେ ନିଜ ପରିଶ୍ରମ ବା ଦେହର ବଳ ବିକି ପ୍ରାଣ ବଞ୍ଚାନ୍ତି । ସେମାନେ ଯଦି ନିଜ ଦେହର ବଳ ନ ବିକନ୍ତି, ପରିଶ୍ରମ ନ କରନ୍ତି, ତେବେ ସେମାନେ ଖାଇବା ବିନା ମରିଯିବେ । ତେଣୁ ସେମାନେ ନିଜ ପରିଶ୍ରମକୁ ବିକିବାକୁ ବାଧ୍ୟ ହୁଅନ୍ତି । ଏହିମାନେ ହେଲେ ଶ୍ରମିକ ଶ୍ରେଣୀ

ବା ସର୍ବହରା । ଏମାନଙ୍କୁ ସର୍ବହରା କାହିଁକି କୁହାଯାଏ ? ତାର କାରଣ ହେଉଛି ଯେ, ଏହି ଶ୍ରମିକଶ୍ରେଣୀ ତାର ସର୍ବସ୍ୱ ହରାଇ ବଞ୍ଚି ରହିବାର ଅନ୍ୟ କୌଣସି ପନ୍ଥା ନ ପାଇ ନିଜ ଦେହର ବଳ ବିକିବାକୁ ବାଧ୍ୟ ହେଉଛନ୍ତି । ଏହି ଶ୍ରମିକ ଶ୍ରେଣୀ ଯଦି କାମ ନ ପାଇବେ ତେବେ ଖାଇବା ବିନା ମରିଯିବେ । ଅନ୍ୟ ଦିଗରେ ଦେଖିବାକୁ ଗଲେ ସେମାନେ ଯଦି ପରିଶ୍ରମ ନ କରନ୍ତି ତେବେ ମାଲିକର ପୁଞ୍ଜି ବଢ଼ିବ ନାହିଁ । ପୁଞ୍ଜି ନ ବଢ଼ିଲେ ସେମାନେ କାମ ପାଇବେ ନାହିଁ । ଅର୍ଥାତ୍ ଶ୍ରମିକମାନଙ୍କୁ ବଞ୍ଚିବାକୁ ହେଲେ ତାଙ୍କ ପରିଶ୍ରମ ବିକି କରିବାକୁ ହେବ ଓ ମାଲିକ ଏମାନଙ୍କୁ ଶୋଷଣ କରି ପୁଞ୍ଜି ବଢ଼ାଇବ । ବଜାରରେ ଜିନିଷ ବିକି ହେଲା ପରି ଏମାନେ ବିକି ହୁଅନ୍ତି । ଜିନିଷର ମୂଲ୍ୟ ଯେପରି ବଜାରରେ କମ ବେଶୀ ହୁଏ ବା ଦରବଢ଼ି ଯାଏ ଓ କମି ଆସେ; ଏମାନଙ୍କର ସେହିପରି ଦର ବଢ଼େ ଓ କମେ । ବଜାରରେ ପ୍ରତିଦ୍ୱନ୍ଦିତା ଯୋଗୁଁ ଯେପରି ଦର ବଢ଼େ ଓ କମେ ସେପରି ଏମାନଙ୍କର ମଧ୍ୟ ହୁଏ । ଏମାନେ ତେଣୁ ବଜାରରେ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ପରି ଗୋଟିଏ ଗୋଟିଏ ପଣ୍ୟଦ୍ରବ୍ୟ । କମ୍ରେଡ଼ ଷ୍ଟାଲିନଙ୍କ ଭାଷାରେ କହିବାକୁ ଗଲେ— "ଯେଉଁମାନଙ୍କର ଉତ୍ପାଦନର ଉପକରଣରେ କୌଣସି ଭାଗ ନାହିଁ ସେମାନେ ସର୍ବହରା ଓ ଏହି ଉପକରଣଗୁଡ଼ିକ ଗୋଟାଏ ପୁଞ୍ଜିବାଦୀ ଶ୍ରେଣୀ ହାତରେ ରହିବା ଦ୍ୱାରା ପୁଞ୍ଜିବାଦୀ ସର୍ବହରାକୁ ଶୋଷଣ କରେ ।" ତେଣୁ ପୁଞ୍ଜିବାଦୀ ଅବସ୍ଥାରେ ପରିଶ୍ରମ ଗୋଟିଏ ପଣ୍ୟଦ୍ରବ୍ୟ । ଏଥିପାଇଁ ଶ୍ରମିକ ନିଜର ପରିଶ୍ରମ ଶକ୍ତିକୁ ହୁଏତ ପୁଞ୍ଜିବାଦୀଠାରେ ବିକି କରିବ କିମ୍ବା ଭୋକ ଉପାସରେ ମରିବ । ଏହାଛଡ଼ା ତାର ଆଉ ଅନ୍ୟଗତି ନାହିଁ । ଦିନକୁ ଦିନ ଏହି ଶ୍ରମିକ ଶ୍ରେଣୀ ବଢ଼ିବାରେ ଲାଗିଛି ଓ ଗାଁର ଶ୍ରେଷ୍ଠ ଶ୍ରେଷ୍ଠ ଶିଳ୍ପ

ଅନୁଷ୍ଠାନ ଗୁଡ଼ିକ ନଷ୍ଟ ହେବାରେ ଲାଗିଛି । ସର୍ବହରା ଶ୍ରେଣୀ ଓ ପୁଞ୍ଜିବାଦୀ ଶ୍ରେଣୀ ଦୁହେଁ ଦୁହିଁଙ୍କର ଶତ୍ରୁ । ଅଥଚ ସର୍ବହରା ପୁଞ୍ଜିବାଦକୁ ପୁଷ୍ଟ କରୁଛି ଓ ପୁଞ୍ଜିବାଦ ସର୍ବହରାଶ୍ରେଣୀର ସଂଖ୍ୟା ବଢ଼ାଇ ଚାଲିଛି । ସର୍ବହରାର ଯାହା ସ୍ୱାର୍ଥ, ପୁଞ୍ଜିବାଦୀର ସ୍ୱାର୍ଥ ଠିକ୍ ତାର ବିପରୀତ । ପୁଞ୍ଜିବାଦୀ ଚାହେଁ ସେ କିପରି ଶ୍ରମିକଠାରୁ ବେଶୀ ଶୋଷଣ କରିବ । ଫଳରେ ଗୋଟିଏ ଶ୍ରେଣୀ ଶୋଷକ ଓ ଅନ୍ୟ ଗୋଟିଏ ଶ୍ରେଣୀ ଶୋଷିତ । ପୁଞ୍ଜିବାଦୀ ପ୍ରଥା ଏପରି ଭାବରେ ନିୟନ୍ତ୍ରିତ ହୋଇଅଛି ଯେ, ଶ୍ରମିକ ଯେତିକି ପାଏ ତାଠାରୁ ବେଶୀ ପରିଶ୍ରମ କରେ । ମନେକର ଜଣେ ଶ୍ରମିକ ୩ ଘଣ୍ଟା ପରିଶ୍ରମ କଲେ ତାହାର ମଜୁରି ସେ ପାଇପାରିବ, ବା ତାହାର ମଜୁରି ସଙ୍ଗେ ସମାନ ହେବ । କିନ୍ତୁ ସେ ୧୦ ଘଣ୍ଟା ପରିଶ୍ରମ କରିବାକୁ ବାଧ୍ୟ—ତେଣୁ ଏଥିରେ ଯେଉଁ ଅଧିକା ୭ ଘଣ୍ଟା ସେ ପରିଶ୍ରମ କଲା ଏହାଦ୍ୱାରା ସେ ମାଲିକ ପାଇଁ ବିନା ମଜୁରିରେ କାମ କଲା ଓ ଏହାଦ୍ୱାରା ସେ ଅଧିକ ଲାଭ ମାଲିକ ପାଇଁ ତିଆରି କଲା । ତେଣୁ ପୁଞ୍ଜିବାଦୀ ଶ୍ରେଣୀ ଉତ୍ପାଦନ ଉପକରଣମାନଙ୍କର ମାଲିକ ଥିବାରୁ ଶ୍ରମିକମାନଙ୍କର ମାଗଣା ପରିଶ୍ରମ (Unpaid labour) ଆତ୍ମସାତ କରି ଅଧିକା ଲାଭ କରନ୍ତି । ତାହାହେଲେ ଏ ଅଧିକା ଲାଭ ପୁଞ୍ଜିବାଦୀ ସର୍ବହରାଠାରୁ ଶୋଷଣ କରେ । ତେବେ ଏ ଅଧିକା ଲାଭ କଣ ହୁଏ ?

ଏ ଅଧିକା ଲାଭତକ କଣ ପୁଞ୍ଜିବାଦୀ ସବୁ ନିଜେ ଖରଚ କରେ ? ନା, କିଛି ହୁଏତ ପୁଞ୍ଜିବାଦୀ ତାର ମଉଜ ମଜଲିସ ଓ ବିଳାସ ବ୍ୟସନରେ ଖର୍ଚ୍ଚ କରେ; କିନ୍ତୁ ଅନ୍ୟତକ ନୂଆ ନୂଆ ବ୍ୟବସାୟରେ ( ବ୍ୟାଙ୍କରେ ଜମେଇବା ସେୟାର କିଣିବା, ନୂଆ

କଳ କାରଖାନା କିଣିବା ) ଖଟାଏ । ଏ ଅଧିକା ଲାଭରୁ କିଛି ସରକାର ଘରକୁ ଯାଏ । ଦରକାରକୁ ଯେ ଏମାନେ ଏହାଦ୍ୱାରା କର ଦଅନ୍ତି ତାହା ନୁହେଁ । ଏହି ଟଙ୍କାଟକ ସରକାରର ସ୍କୁଲସ୍ଥ ପୁଲିସ, ସୈନ୍ୟ ଚାକିରିଆଙ୍କର ଖରଚରେ ଲାଗେ । ଅର୍ଥାତ୍ ଏହି ପୁଞ୍ଜିବାଦୀମାନେ ବଡ଼ଲୋକ ଥିବାରୁ ତାଙ୍କର ହାତରେ ସରକାର ରହେ ବା ସେମାନେ ସରକାର ଚଳାନ୍ତି । ଯେପରି ଭାବରେ ଶୋଷଣ କଳ ଠିକ୍ ବଜାୟ ରହିବ ଓ ତାଙ୍କ ସ୍ୱାର୍ଥରେ କୌଣସି ବାଧା ପଡ଼ିବ ନାହିଁ, ସେହିପରି ଭାବରେ ନିୟମ, କାନୁନ ତିଆରି ହୁଏ ଓ ସରକାରୀ ବ୍ୟବସ୍ଥା ହୁଏ ।

ଏହିପରି ଭାବରେ ସବୁବେଳେ, ପୁଞ୍ଜିବାଦୀଙ୍କ ବଳ ପରିଶ୍ରମୀ ମଜୁରମାନଙ୍କୁ ଶୋଷେ ଓ ଅତ୍ୟାଚାରୀଙ୍କ ଦାଉ ବଢ଼ାଏ । ଯେ ପର୍ଯ୍ୟନ୍ତ ପୁଞ୍ଜିବାଦୀ ସମାଜ ଥିବ, ସେତେଦିନ ପର୍ଯ୍ୟନ୍ତ ସମାଜରେ ଲକ୍ଷ ଲକ୍ଷ ଲୋକ ଦୁଃଖ କଷ୍ଟରେ ଜୀବନ ଯାପନ କରୁଥିବେ ଓ ଅଳ୍ପ କେତେଜଣ ଲୋକ ସେମାନଙ୍କୁ ଶୋଷଣ କରି ଅଯଥା ବିଳାସ ବ୍ୟସନରେ ଦିନ କାଟୁଥିବେ ।

## ପୁଞ୍ଜିବାଦୀ ସମାଜରେ ବିରୋଧ

ଉପରେ ଯେଉଁ ପୁଞ୍ଜିବାଦୀ ସମାଜର ଆଲୋଚନା ହେଲା, ସେଥିରୁ ଆମେ କଣ ବୁଝିଲୁଁ ? ପୁଞ୍ଜିବାଦୀ ସମାଜ କହିଲେ ଆମ୍ଭେମାନେ ଏହାହିଁ ବୁଝୁ ଯେ, ଲକ୍ଷ ଲକ୍ଷ ଲୋକ ମୁଣ୍ଡବିଳା ତୁଣ୍ଡରେ ମାଡ଼ ଖଟନ୍ତି ଓ ତାଙ୍କ ପରିଶ୍ରମର ଫଳ ଭୋଗ କରନ୍ତି କେତେଜଣ ଶୋଷକ । ଯେଉଁ ସବୁ ଖାଦ୍ୟ ଦ୍ରବ୍ୟ ଉତ୍ପନ୍ନ ହୁଏ ସେ ସବୁ କେଉଁଠି କେହି ଜାଣେ ନାହିଁ । ହଜାର ହଜାର ଶ୍ରମିକ-ମାନଙ୍କର ସମଷ୍ଟିଗତ ଉଦ୍ୟମ ବା ପରିଶ୍ରମରୁ ଯେ ସବୁ ଉତ୍ପନ୍ନ

ହୁଏ । ଏହିସବୁ ଉତ୍ପନ୍ନ ଦ୍ରବ୍ୟରେ ଶ୍ରମିକମାନଙ୍କର ଭାଗ ନାହିଁ । ଏ ସବୁ କଳମାଲିକର ଓ ଅନ୍ୟାନ୍ୟ ପୁଞ୍ଜିପତିଙ୍କର । ଶ୍ରମିକ କେବଳ ମଜୁରି ହିସାବରେ ହାତଟେକା ଭାବରେ ଯାହା କିଛି ପାଏ । ପୁଞ୍ଜିବାଦର ବୃଦ୍ଧି ସଙ୍ଗେ ସଙ୍ଗେ ମିଲ୍ ଫ୍ୟାକ୍ଟେରୀ ଓ କଳକାରଖାନା ମଧ୍ୟ ବଢ଼ି ଚାଲିଥାଏ ଓ ତା ସଙ୍ଗେ ସଙ୍ଗେ ଶ୍ରମିକଙ୍କ ସଂଖ୍ୟା ମଧ୍ୟ ହଜାର ହଜାର ସଂଖ୍ୟାରେ ବଢ଼ିଥାଏ । ଏଥିରୁ ଆମେ କଣ ଦେଖିଲେ ? ପୁଞ୍ଜିବାଦର ପ୍ରସାର ସଙ୍ଗେ ସଙ୍ଗେ ଶ୍ରମିକଙ୍କ ସଂଖ୍ୟା ମଧ୍ୟ ବଢ଼ୁଛି; ଅର୍ଥାତ୍ ଉତ୍ପାଦନ ପ୍ରଣାଳୀର ବୃଦ୍ଧି ସହିତ ଶ୍ରମିକ ବା ସର୍ବହରାର ସଂଖ୍ୟା ବୃଦ୍ଧି ପାଉଛି । ତେଣୁ ଉତ୍ପାଦନର ଗୋଟାଏ ସାମାଜିକ ପ୍ରକୃତି ରହିଛି ।

## ସାମାଜିକ ପ୍ରକୃତି କଣ ?

ଉତ୍ପାଦନର ଦୁଇଟି ପ୍ରକୃତି-ଗୋଟିଏ ପ୍ରଯୁକ୍ତିକ (Technical) ଅନ୍ୟଟି ସାମାଜିକ । ଉତ୍ପାଦନର ସାମାଜିକ ପ୍ରକୃତିହିଁ ପ୍ରଧାନ । ଜିନିଷ ଉତ୍ପାଦନ ହେଲେ ଏଥିରୁ କି କି ସାମାଜିକ ସମ୍ବନ୍ଧ ଉପୁଜୁଛି, ଏହାହିଁ ବିଚାର କରିବାର କଥା । ଉତ୍ପନ୍ନ ଜିନିଷ ବିଭିନ୍ନ ସାମାଜିକ ସମ୍ବନ୍ଧ ସୃଷ୍ଟି କରେ, ଯଥା—ଯେ କିଣେ, ଯେ ବିକେ, ଯେ ଦଖଲ କରେ, ଯେ ଜିନିଷ କିଣି ବ୍ୟବସାୟ କରିବା ପାଇଁ ଟଙ୍କା କରଜ ଦିଏ, ଅର୍ଥାତ୍ ବ୍ୟାଙ୍କ ବା ମହାଜନ ପ୍ରଭୃତି— ଏଥିରୁ ଏହା ବୁଝାଗଲା ଯେ, ଉତ୍ପନ୍ନ ଜିନିଷ ସମାଜରେ ଭିନ୍ନ ଭିନ୍ନ ସମ୍ବନ୍ଧ ସ୍ଥାପନ କଲେ—ମହାଜନ, ଦଲାଲ, ଭଣ୍ଡିଖିଆ, ବିକେତା ପ୍ରଭୃତି ।

ଏଙ୍ଗେଲସ୍‌ଙ୍କ ଭାଷାରେ "ଲୁଗା, ଛତା, ଯନ୍ତ୍ରପାତି ପ୍ରଭୃତି ଯେଉଁସବୁ ଦ୍ରବ୍ୟ କଳ କାରଖାନା ପ୍ରଭୃତିରୁ ତିଆରି ହେଉଛି

ସେ ସବୁ ହଜାର ହଜାର ଶ୍ରମିକଙ୍କର ପରିଶ୍ରମର ଫଳ । କୌଣସି ଗୋଟିଏ ହେଲେ ଶ୍ରମିକ ଉତ୍ପାଦକ ନାହିଁ ଯେ, ସେ କୌଣସି ଗୋଟିଏ ଦ୍ରବ୍ୟକୁ ଏକା ତିଆରି କରିଛି । ପ୍ରତ୍ୟେକ ଶ୍ରମିକର କିଛି ନା କିଛି ଭାଗ ଅଛି ।”

ଯେଉଁ ସବୁ ଦ୍ରବ୍ୟ ହଜାର ହଜାର ସଂଖ୍ୟାରେ ଉତ୍ପନ୍ନ ହୁଏ, ଗୋଟିଏ ରକମର ନ ହୋଇ ଭିନ୍ନ ଭିନ୍ନ ପ୍ରକାରର ହୁଏ ଏବଂ ସେ ସବୁ ଗୁଡ଼ିକ ପ୍ରତ୍ୟେକ ପ୍ରତ୍ୟେକଠାର ସହିତ ସଂପୃକ୍ତ ଅଥଚ ଦ୍ରବ୍ୟଗୁଡ଼ିକ ନିଜ ନିଜଠାରୁ ସଂପୂର୍ଣ୍ଣ ପୃଥକ ହେଲେହେଁ ଗୋଟିଏ ସାମାଜିକ ଉତ୍ପାଦନ ଭିତରେ ଅବଦ୍ଧ ।

ସମାଜରେ ଯାହା ସବୁ ଉତ୍ପାଦନ ହୁଏ ତାହା ଗୋଟିଏ ସାମାଜିକ ଶିକୁଳିରେ ବନ୍ଧା—ଲୁଗା, ସୂତା, ଛୁଞ୍ଚି, ଅଇନା, ଟେବୁଲ, ଚୌକି, କଳକବ୍ଜା ଇତ୍ୟାଦି । କିପରି ? ମନେକର, ଯେ ଲୁଗା ତିଆରି କଲା, ଯେ ସୂତା ତିଆରି କଲା, ଯେ ଲୁଗା ଗଣ୍ଠି ବାନ୍ଧିଲା, ଯେ କୋଇଲା ଖୋଳିଲା, ଯେ କୋଇଲା ଉଠାଇଲା, ଯେ ଟେବୁଲ ତିଆରି କଲା, ସମସ୍ତେ ସମାଜର ସମସ୍ତ ପରିଶ୍ରମର ଗୋଟିଏ ଗୋଟିଏ ଅଂଶ—ଲୁଗା ଛୁଞ୍ଚିଠାରୁ ପୃଥକ, ଅଥଚ ଯେଉଁ ଶ୍ରମିକ ଲୁଗା ତିଆରି କରେ ସେ ଛୁଞ୍ଚି ତିଆରି କରିବା ଶ୍ରମିକ ସହିତ ସଂପୃକ୍ତ । କାରଣ ଧନିମୟ ସୂତ୍ରରେ ବଜାରରେ ପ୍ରତ୍ୟେକଙ୍କର ପ୍ରତ୍ୟେକଙ୍କ ସହିତ ଘନିଷ୍ଠ ସମ୍ପର୍କ ଅଛି ଓ ଏହା ସାମାଜିକ ସମ୍ବନ୍ଧର ଗୋଟାଏ ପ୍ରଥା ସୃଷ୍ଟି କରେ ।

ପୁଞ୍ଜିବାଦୀ ପଣ୍ୟଦ୍ରବ୍ୟର କାରବାରରେ ବା ଉତ୍ପାଦନରେ ଏପରି ସାମାଜିକ ସମ୍ବନ୍ଧ ସୃଷ୍ଟି ହୁଏ । ଯେଉଁଠି ପୁଞ୍ଜିବାଦୀ ପଣ୍ୟଦ୍ରବ୍ୟ ପ୍ରଥା ନାହିଁ ସେଠାରେ ଏହା ସମ୍ଭବ ନୁହେଁ ।

ମନେକର, ପୃଥିବୀର ଗୋଟାଏ ନିର୍ଜନ ସ୍ଥାନରେ ଗୋଟିଏ ଲୋକ ଅଛି । ତାର ଚଳିବା ପାଇଁ ଯାହା ଆବଶ୍ୟକ ସେ ସବୁ ସେ ନିଜେ ତିଆର କରେ । ଏଠାରେ ସେ ଲୋକଟି ଯେଉଁ ପରିଶ୍ରମ କଲା ତାହା ସମାଜର ସମସ୍ତ ପରିଶ୍ରମର କୌଣସି ଅଂଶ ନୁହେଁ । ଏଠାରେ ପରିଶ୍ରମଟା ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଓ ପୃଥକ୍—ସାମାଜିକ ନୁହେଁ । ତେବେ ସମାଜବାଦୀ ସମାଜରେ ପରିଶ୍ରମ ଓ ପୁଞ୍ଜିବାଦୀ ସମାଜରେ ପରିଶ୍ରମ ଭିତରେ ପାର୍ଥକ୍ୟ କଣ ? ସମାଜ-ବାଦୀ ସମାଜରେ ପରିଶ୍ରମ ବିକ୍ଷିପ୍ତ ବା ଅସଂଗଠିତ ନୁହେଁ । ସମାଜବାଦୀ ସମାଜରେ ପରିଶ୍ରମଟି ପୁରାପୁରି ସାମାଜିକ ଓ ସଂଗଠିତ । ପରିଶ୍ରମର ଫଳ ସମାଜର ସମ୍ପତ୍ତି, ସମସ୍ତେ ଏହା ଭୋଗ କରନ୍ତି । କିନ୍ତୁ ପୁଞ୍ଜିବାଦୀ ସମାଜରେ ପରିଶ୍ରମର ଫଳ ସମାଜର ସମସ୍ତଙ୍କର ନୁହେଁ, କେତେକଜଣଙ୍କର—ଧନ ଦପହରେ କେତେଜଣ ମାତ୍ର ଏହି ପରିଶ୍ରମ ଭୋଗ କରନ୍ତି ।

ପୁଞ୍ଜିବାଦୀ ଅବସ୍ଥାରେ ଏହି ସାମାଜିକ ପରିଶ୍ରମର ଫଳ ସମାଜ ଅଧୀନରେ ନ ରହି ବ୍ୟକ୍ତିବିଶେଷ ବା ପୁଞ୍ଜିବାଦୀ-ମାନଙ୍କ ଅଧୀନରେ ରହେ । ସମସ୍ତଙ୍କର ପରିଶ୍ରମର ଫଳ ଜଣେ ବା କେତେକଜଣ ଭୋଗ କରନ୍ତି । ଏହିଠାହିଁ ହେଉଛି ପୁଞ୍ଜିବାଦର ପ୍ରଧାନ ଦ୍ୱନ୍ଦ, ବିରୋଧ ବା ସଂଘର୍ଷ । କିପରି ? ସମାଜର ସମସ୍ତେ ଦ୍ରବ୍ୟ ଉତ୍ପାଦନ କଲେ, କିନ୍ତୁ ବ୍ୟକ୍ତିବିଶେଷ-ପୁଞ୍ଜିବାଦୀ ଏହାର ମାଲିକ ହେଲା । ଏହାହିଁ ହେଲା ସଂଘର୍ଷ, ଦ୍ୱନ୍ଦ ବା ବିରୋଧ । ଏହି ପ୍ରଧାନ ଦ୍ୱନ୍ଦରୁ ପୁଞ୍ଜିବାଦର ଅନ୍ୟାନ୍ୟ ବିରୋଧ ମଧ୍ୟ ବାହାରେ ଏବଂ ଏହି ଦ୍ୱନ୍ଦ ଗୁଡ଼ିକ ବୃଦ୍ଧି ପାଇ ଓ ଘନୀଭୂତ ହୋଇ ପୁଞ୍ଜିବାଦୀ ସମାଜକୁ ଧ୍ୱଂସଆଡ଼କୁ ଗତି କରାଉଅଛି । ପୁଞ୍ଜିବାଦୀ ସଂସ୍ଥା ବଢ଼ିବା ସଙ୍ଗେ ସଙ୍ଗେ ସାମାଜିକ ଉତ୍ପାଦନ ମଧ୍ୟ ବଢ଼ି

ଘୁଲିଛି । ତେଣୁ ସାମାଜିକ ପରିଶ୍ରମର ଫଳ ସମାଜ ଉପଭୋଗ ନ କରି ବ୍ୟକ୍ତିଗତ ପୁଞ୍ଜିବାଦୀଙ୍କ ଅଧୀନରେ ରହୁଅଛି । ତେଣୁ ଦୁଇଟି ପରସ୍ପର ବିରୋଧୀ ଶ୍ରେଣୀ ଗଢ଼ି ଉଠୁଛି—ଗୋଟିଏ ହେଉଛି ସର୍ବହରା, ଅପରଟି ପୁଞ୍ଜିବାଦୀ । ଏହିପରି ଭାବରେ ଉତ୍ପାଦନ, ସାମାଜିକ ପ୍ରକୃତି ଓ ବ୍ୟକ୍ତିଗତ ମାଲିକାନା ଘଭିର ସଂଘର୍ଷ ଏହି ଦୁଇ ଶ୍ରେଣୀ ଭିତରେ ଅର୍ଥାତ୍ ସର୍ବହରା ଓ ବୁର୍ଜୁଆଙ୍କ ମଧ୍ୟରେ ଆଗେଇ ଦେଉଛି ।

ଅନ୍ୟ ଗୋଟିଏ ସଂଘର୍ଷ ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀରୁ ଜାତ ହୁଏ । ତାହା ହେଉଛି ଯେଉଁମାନେ ଉତ୍ପାଦନ କରନ୍ତି ସେମାନେ ସେହି ଉତ୍ପନ୍ନ ଦ୍ରବ୍ୟର ଅଧିକାରୀ ନୁହନ୍ତି । କିନ୍ତୁ ଫ୍ୟାକ୍ଟରୀ ବା କଳକାରଖାନାର ମାଲିକମାନେ ସେହିସବୁ ଦ୍ରବ୍ୟର ମାଲିକ ।

ମିଲ୍ ବା ଫ୍ୟାକ୍ଟରୀରେ ଯେଉଁସବୁ ଦ୍ରବ୍ୟ ଉତ୍ପାଦନ ହୁଏ, ସେସବୁ ଯେ, ସମାଜର ଠିକ୍ ଚାହିଦା ମୁତାବକ କରାଯାଏ ତାହା ନୁହେଁ ବା ସେହି ଉତ୍ପନ୍ନ ଦ୍ରବ୍ୟଗୁଡ଼ିକ ଯେ ସମାଜରେ ସଂଗଠିତ ଓ ସୁଶୃଙ୍ଖଳ ଭାବରେ ବଣ୍ଟାଯାଏ ତାହା ମଧ୍ୟ ନୁହେଁ । ପ୍ରତ୍ୟେକ କଳ ବା ଫ୍ୟାକ୍ଟରୀର ମାଲିକ ବା ପ୍ରତ୍ୟେକ ପୁଞ୍ଜିବାଦୀ କେବଳ ଲାଭ ପାଇଁ ବ୍ୟାକୁଳ । ତେଣୁ ଯେଉଁସବୁ ଦ୍ରବ୍ୟ ଉତ୍ପନ୍ନ କରାଯାଏ ତାହା କେବଳ ଲାଭପାଇଁ କରାଯାଏ । ଏଙ୍ଗେଲସ୍ କହିଛନ୍ତି-"ଯେଉଁ ଦ୍ରବ୍ୟ କଳମାଲିକ ବା ପୁଞ୍ଜିବାଦୀ ତିଆର କରେ, ସେଥିରୁ କେତେ ବଜାରକୁ ଆସେ ଓ ସେଥିପାଇଁ କେତେ ପ୍ରକୃତ ଗରାଖ ଅଛନ୍ତି ତାହା କହିବା ମୁସ୍କିଲ ।" ସେ ପଣ୍ୟ ଦ୍ରବ୍ୟ-ଗୁଡ଼ିକର ପ୍ରକୃତ ଗରାଖ ଜୁଟିବେ ବା ସେଗୁଡ଼ିକ ଯେ ବିକି ହୋଇ

ପାରିବ ଏହା କେନ୍ଦ୍ରଭୂତ ପାରିବେ ନାହିଁ । ଏହା ସାମାଜିକ ଉତ୍ପାଦନ ପ୍ରଣାଳୀରେ ଅରାଜକତା ବା ବିଶୃଙ୍ଖଳା ଆଣିଦିଏ । ପ୍ରତ୍ୟେକ ପୁଞ୍ଜିବାଦୀ ବଜାର ଦଖଲ କରିବା ପାଇଁ ଚେଷ୍ଟା କରେ ଏବଂ ତାହାର ପ୍ରତିଦ୍ୱନ୍ଦୀ ପୁଞ୍ଜିବାଦୀ ବ୍ୟବସାୟୀଙ୍କୁ ବଜାରରୁ ତଡ଼ିଦେବା ପାଇଁ ଚେଷ୍ଟା କରେ । ବଡ଼ ବଡ଼ ପୁଞ୍ଜିବାଦୀମାନେ ଛୋଟ ଛୋଟ ବ୍ୟବସାୟୀମାନଙ୍କୁ ଖତମ କରି ଦେବା ପାଇଁ ଚେଷ୍ଟା କରନ୍ତି । କାରଣ ତାହାହେଲେ ସେମାନଙ୍କର ବେଶୀ ଜିନିଷ ବଜାରରେ ବିକ୍ରି ହୋଇ ପାରିବ ଏବଂ ସେମାନେ ବେଶୀ ଲାଭ ଉଠାଇ ପାରିବେ । ଗୋଟିଏ ବଡ଼ କଳ ବା ଫ୍ୟାକ୍ଟରୀ ସହିତ ଗୋଟିଏ ଛୋଟ କଳ ବା ଫ୍ୟାକ୍ଟରୀ ମୁଣ୍ଡଟେକି ଯୋଡ଼ ଦେଇ ପାରିବ ନାହିଁ । କାରଣ ବଡ଼ ଫ୍ୟାକ୍ଟରୀ ବା କଳର ମାଲିକ ସବୁବେଳେ ଜିନିଷ ଅତି ଶସ୍ତାରେ ଉତ୍ପାଦନ କରି ବଜାରରେ ଛୋଟିଆ କଳ ବା ଫ୍ୟାକ୍ଟରୀର ମାଲିକଠାରୁ ଶସ୍ତା ଦରରେ ବିକ୍ରି କରି ପାରିବ । ତେଣୁ ସାନ ସାନ ପୁଞ୍ଜିବାଦୀ ବା ବ୍ୟବସାୟୀ, କଳ ବା ଫ୍ୟାକ୍ଟରୀ ମାଲିକମାନଙ୍କର ତିଷ୍ଠିବା କଷ୍ଟକର ।

ଯାହାର ସବୁଠାରୁ ବେଶୀ ବଡ଼ କଳକାରଖାନା ଅଛି ବା ସବୁଠାରୁ ଭଲ ଜମି ଅଛି ସେ ଅନ୍ୟାନ୍ୟ ଛୋଟ ଛୋଟ କଳମାଲିକ ବା ଜମି ମାଲିକମାନଙ୍କଠାରୁ ବେଶୀ ଶସ୍ତାରେ ଜିନିଷ ଉତ୍ପାଦନ କରି ପାରିବ ବୋଲି ଉପରେ ଦେଖିଲେଁ । ତାହେଲେ ପ୍ରତିଦ୍ୱନ୍ଦ୍ୱିତା ପୂର୍ଣ୍ଣ ବଜାରରେ ସାନ ସାନ ପ୍ରତିଦ୍ୱନ୍ଦ୍ୱୀ ବ୍ୟବସାୟୀ ମାନଙ୍କର ମୁଣ୍ଡ ଟେକି ରହିବାର ଅବକାଶ ରହୁନାହିଁ, ଅନ୍ୟ କଥାରେ ସେମାନେ ଲୋପ ପାଇ ଯାଉଛନ୍ତି । ସାନ ସାନ ପ୍ରତିଦ୍ୱନ୍ଦ୍ୱୀ ବ୍ୟବସାୟୀ ବା ପୁଞ୍ଜିବାଦୀମାନଙ୍କୁ ବଜାରରୁ ତଡ଼ିଦେଇ

ପରେ ପୁଣି ଜଣକର ଦର ସେ ବହୁପରିମାଣରେ କମାଇଦେବ । ସେତେବେଳେ ତାର ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ନ ଥିବେ । ବଜାର ଦଖଲ ପାଇଁ ପୁଞ୍ଜିବାଦୀ ମାନଙ୍କର ଏ ଲଢ଼ାଇକୁ ପ୍ରତିଦ୍ୱନ୍ଦ୍ୱିତା କହନ୍ତି । ପୁଞ୍ଜିବାଦୀ ଅର୍ଥନୀତିର ଏହାହିଁ ପ୍ରଧାନ ବିଶେଷତ୍ୱ ।

ତେଣୁ ଆମେ ଦେଖିଲେଁ ଉତ୍ପାଦନର ସାମାଜିକ ପ୍ରକୃତି ଓ ପୁଞ୍ଜିବାଦୀ ବ୍ୟକ୍ତି ବିଶେଷଙ୍କର ତାହା ଉପରେ ଅଧିକାର, ଯେଉଁ ସଂଘର୍ଷ ଆଣେ ତାହା ପୁଞ୍ଜିବାଦୀ ଅର୍ଥନୀତି ଥିବା ପର୍ଯ୍ୟନ୍ତ ପ୍ରତିଦ୍ୱନ୍ଦ୍ୱିତା ଓ ଉତ୍ପାଦନରେ ଅରାଜକତା ଆଣିବ ।

# ମଜୁରି ବୋନସର ରହସ୍ୟ

ପୁଞ୍ଜିବାଦୀ ସଂସ୍ଥାରେ ଶ୍ରମିକ ପୁଞ୍ଜିବାଦୀକୁ ତାର ଶ୍ରମଶକ୍ତି ବିକ୍ରୟ କରେ । ପୁଞ୍ଜିପତି ଶ୍ରମିକକୁ ଭଡ଼ା ଆଣେ ଓ ନିଜ ପାଇଁ କାମ କରାଏ । ଶ୍ରମିକ ତାର ମୂଲ୍ ପାଏ । ଏହିପରି ଶ୍ରମଶକ୍ତିର କିଣାବିକା ହୁଏ ।

କିନ୍ତୁ ଶ୍ରମଶକ୍ତି ଅନ୍ୟାନ୍ୟ ପଣ୍ୟ ଦ୍ରବ୍ୟ ପରି ନୁହେଁ । ଏହାର ବିଶେଷତ୍ୱ ଅଛି । ଶ୍ରମଶକ୍ତିର କିଣାବିକା ପୁଞ୍ଜିବାଦୀ ସମାଜର ଦୁଇଟି ମୌଳିକ ଶ୍ରେଣୀ—ପୁଞ୍ଜିପତି ଓ ଶ୍ରମିକ ଭିତରେ ଗୋଟିଏ ସମ୍ବନ୍ଧ ସ୍ଥାପନ କରେ ।

ସାଧାରଣତଃ ଲୋକେ କହି ଥାଆନ୍ତି ଯେ, ଗାଁରେ ମୂଲ, କମ, ସହରରେ ବେଶି ବା ଖୋର୍ଦ୍ଧାରେ କମ, କଟକରେ ବେଶି ବା ଗଡ଼ଜାତରେ କମ ମୋଗଲବନ୍ଦୀରେ ବେଶୀ ଇତ୍ୟାଦି । ଏପରି ଯେଉଁମାନେ କୁହନ୍ତି, ହୁଏତ ସେମାନେ ଏହାର ସନ୍ତୋଷ-

କନକ ଉତ୍ତର ଦେଇ ପାରବେ ନାହିଁ । ତେବେ ଦେଖାଯାଉ ମୂଲର ଏପରି କମ ବେଶୀ କାହିଁକି ହୁଏ ବା ଅନ୍ୟ କଥାରେ ମଜୁରି କିପରି ଧାର୍ଯ୍ୟ ହୁଏ ? ତାର ମାପକାଠି କଣ ?

ଗୋଟିଏ ଶ୍ରମିକର ଚଳିବା ପାଇଁ ଯାହା ଦରକାର ସେହି ଅନୁସାରେ ହାରହାରି ମଜୁରି ଧାର୍ଯ୍ୟ କରାଯାଏ । ଗାଁରେ ଜୀବନ-ଯାତ୍ରା ନିର୍ବାହ କରିବା ଅତି ସହଜ । ଶାଗ ଭାତରେ ଦିନ କଟିଯାଏ । ତେଣୁ ସେହି ଅନୁସାରେ ମଜୁରି ଧାର୍ଯ୍ୟ ହୁଏ । ସେହି ଶାଗ ଭାତ ଖାଇବା ପାଇଁ ମଧ୍ୟ ସହରରେ ଗାଁ ଅପେକ୍ଷା ବେଶି ପଡ଼େ । ତେଣୁ ଗାଁ ଅପେକ୍ଷା ସହରର ମଜୁରି ବେଶି । ସେଥିପାଇଁ ଅତି କମରେ ଚଳିବା ପାଇଁ ଯେତେ ଦରକାର ସେହି ଷ୍ଟାଣ୍ଡାର୍ଡ଼ ଅନୁଯାୟୀ ମଜୁରି ଧାର୍ଯ୍ୟ କରାଯାଏ । କିନ୍ତୁ ଏକଥା ମନେ ରଖିବାକୁ ପଡିବ ଯେ, ପୁଞ୍ଜିପତି ମାନେ ଏହି ଷ୍ଟାଣ୍ଡାର୍ଡ଼ରୁ ମଧ୍ୟ ମଜୁରି ସବୁ ବେଳେ କମାଇ-ବାକୁ ଚେଷ୍ଟା କରନ୍ତି । ପୁଞ୍ଜିବାଦୀ ଯୁଗରେ ଶ୍ରମିକ ପାଇଁ କାହାର ମୁଣ୍ଡ ବଥାଏ ନାହିଁ, ସେ କିପରି ଚଳେ, ପାଉଥିବା ମଜୁରି କଥା ଅଣ୍ଟେ କି ନାହିଁ, କଣ ଖାଏ, ଖାଇବାକୁ ନ ପାଇ କିପରି ସେ ମରେ, ବେକାର ହୋଇ ଡଳଡଳ କରି ତାର ରକ୍ତ କିପରି ପାଣି ହୁଏ; ଏଥିରେ କାହାର ଯାଏ ଆସେ ନାହିଁ । ଆମ୍ଭେମାନେ ଆଗରୁ ଦେଖିଥାଇଁ ଯେ, ଶ୍ରମିକର ପରିଶ୍ରମ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଭଳି ବିକ୍ରୀ ହୁଏ । ନିଜେ ଶ୍ରମିକ ବିକ୍ରୀ ହୁଏ ବୋଲି କହିବା ବୋଧହୁଏ ବେଶୀ ଠିକ ହେବ । କିନ୍ତୁ ଶ୍ରମଶକ୍ତିର ଦାମ ଅନ୍ୟାନ୍ୟ ପଣ୍ୟ ଦ୍ରବ୍ୟଠାରୁ ଭିନ୍ନ । 'ଶ୍ରମଶକ୍ତି'ର ହାର ସବୁବେଳେ ଉଚିତ ଦାମଠାରୁ କମ । ଅନ୍ୟ କଥାରେ ମଜୁରି ସବୁବେଳେ ହକ ମଜୁରିଠାରୁ ବହୁତ କମ ।

# ମଜୁରି

ଅଗରୁ ଆମେ ଦେଖିଥାଉଁ ଯେ, ମଜୁରି ଦୁଇଟି ଅଂଶରେ ବିଭକ୍ତ—ପଇସା ଦିଅ ବା ଅବଶ୍ୟକୀୟ ଶ୍ରମ ଓ ମାଗଣା ବା ବଳକା ପରିଶ୍ରମ ।

ଶ୍ରମିକ ଯେଉଁ ମଜୁରି ପାଏ ତାହା ତାର କେବଳ ଅବଶ୍ୟକୀୟ ଶ୍ରମର ମଜୁରି-ବଳକା ଶ୍ରମର ନୁହେଁ । କିନ୍ତୁ ସାଧାରଣତଃ ବାହାରକୁ ଦେଖାଯାଏ ଯେ, ସେ ଧନୀଙ୍କର ବା ମାଲିକର ପରିଶ୍ରମର ମଜୁରି ପାଉଛି ।

ଜଣେ ପ୍ରେସ ବା କାଚ କାରଖାନା ଶ୍ରମିକର କଥା ଧରିଯାଉ । ପିସ୍ ୱାର୍କ ବା ଠିକା କାମ ଅନୁସାରେ ସେ କାମ କରେ । ଧନୀକୁ ୧୪ଏମ୍‌ର ୧୦୮ ଲାଇନ କମ୍ପୋଜ କଲେ ବା ୪୮ ଡଜନ କାଚ ଗ୍ଲାସ ଘଷି ପାଲିସ କଲେ ଧନୀଙ୍କର ମଜୁରି ପାଇବ । ଶରୀରର ସମସ୍ତ ଶକ୍ତି ଖରଚ କରି କଷ୍ଟ ସହି ସେ ଧନୀଙ୍କର ମଜୁରି ପାଏ । ଏହି ମଜୁରିରେ ତାର ଧନୀଙ୍କର ଖାଇବା ଅତି କଷ୍ଟେମଷ୍ଟେ ଚଳେ । ଯଦି ଶ୍ରମିକ ତାର ଦୁଃଖ ଓ ଦୁର୍ଦ୍ଦଶା କଥା ମାଲିକ ଆଗରେ କହିବାକୁ ସାହସ କରେ ଓ ମାଲିକ ଯଦି ଦୟାପରବଶ ହୋଇ ଉତ୍ତର ଦେବାର ପ୍ରୟୋଜନୀୟତା ବୋଧ କରନ୍ତି ତେବେ ସେ ଶ୍ରମିକଙ୍କୁ କହିବେ 'ତୁ ଯେତେ ମୋ ପ୍ରେସରେ ବା କାଚ କାରଖାନାରେ ପାଉଛୁ, ଭାରତରେ ଅନ୍ୟ କୌଣସିଠାରୁ ତୁ ପାଇବୁ ନାହିଁ । ଏହାଠାରୁ ଅଧିକବେଶି ପାଇବା ପାଇଁ ତୁ ତ ହକଦାର ନୋହୁ । ତୁ ଯାହା ପାଉଛୁ—ଯଦି ତାଠାରୁ ବେଶି ପାଇବାକୁ ଇଚ୍ଛାକରୁ ତେବେ ବେଶି କାମ କର ବା ଓଭର ଟାଇମ କର ବେଶି ପାଇବୁ ।'

ତେଣୁ ସାଧାରଣତଃ ଧାରଣା ହୁଏ ଯେ, ଶ୍ରମିକ ଯେତେ ସମୟ କାମ କରେ ଠିକ ସେତିକି ସମୟ ଅନୁଯାୟୀ ଦରମା ବା ମଜୁରି ପାଏ । ତାର ମଜୁରି ପରିବାର କାମ ଦୁଇ ଘଣ୍ଟାରେ ହୋଇଯାଏ ଓ ଅନ୍ୟ ସାତ ଘଣ୍ଟା ସେ ଯେ ମାଲିକ ପାଇଁ ମାଗଣା ଖଟେ ଏକଥା ଶ୍ରମିକ ବୁଝିବ ପାରେ ନାହିଁ; କାରଣ ସବୁ ଘଣ୍ଟାତ ସମାନ, ତେଣୁ ପୁଞ୍ଜିବାଦୀ-ଶୋଷଣର ପ୍ରକୃତ ରୂପ ଜାଣି ହୁଏ ନାହିଁ; ନ୍ୟାୟ-ନୀତିର ମୁଖା ପିନ୍ଧି ଶୋଷଣର ନନ୍ଦଘୋଷ ଚାଲେ; ଏହାର ଖୁବ ପଞ୍ଝଜନ୍ୟ ବଜାନ୍ତି ଧାର୍ମିକ ନୀତିବାଗୀଶମାନେ ଓ ପୁଞ୍ଜିବାଦୀ ଅଧୀନ ବଣାରଦବର୍ଗ । ମାଲିକ ବା ପୁଞ୍ଜିପତିମାନେ ଯେ ଚକ୍ରବର୍ତ୍ତି, ଲାଭ ମାରିବା ପାଇଁ ହକଦାର ଏବଂ ପୁଞ୍ଜିପତି ଓ ସର୍ବହରା ଯେ ପ୍ରକୃତିର ନିୟମ, ସୃଷ୍ଟିର ପରମ୍ପରା ଏହା ପୁଞ୍ଜିବାଦୀ ସମାଜର ବିଜ୍ଞାନିକମାନେ ମଧ୍ୟ ଜୋର୍‌ଦାର୍‌ଭାବରେ ଓ ଅତି ନିର୍ଲ୍ଲଜ୍ଜ ଭାବରେ ଘୋଷଣା କରନ୍ତି—ଏଥିପାଇଁ ଗଡ଼େ ଗଡ଼େ ପୋଥି ଓ ପ୍ରଚୁର ପତ୍ର ମଧ୍ୟ ସୃଷ୍ଟି ହୁଏ ।

## ମଜୁରି ଓ ସର୍ବହରା ଆନ୍ଦୋଳନ

ଶ୍ରମଶକ୍ତିର ମୂଲ୍ୟ ଯେତେ ତାହାର ଉପରେ ମଜୁରି ଧାର୍ଯ୍ୟ ହୁଏ । କିନ୍ତୁ ମଜୁରି ମଧ୍ୟ ସବୁବେଳେ ସମାନ ରହେ ନାହିଁ । ଶ୍ରମଶକ୍ତି ମୂଲ୍ୟର ତଳକୁ ଖସିଆସେ, ଅଥବା ମଧ୍ୟ ଶ୍ରମଶକ୍ତିର ଦାମ ଅବସ୍ଥାର ପରିବର୍ତ୍ତନ ହେତୁ ପରିବର୍ତ୍ତିତ ହୁଏ । କାହିଁକି ?

କାରଣ ପୁଞ୍ଜିପତି ବା କଳମାଲିକ ଓ ଶ୍ରମିକ ଶ୍ରେଣୀ ଭିତରେ ଦୈନନ୍ଦିନ ମଜୁରି ନେଇ ଯୁଦ୍ଧ ବା ସଂଘର୍ଷ ଚାଲିଥାଏ । ଏ ସଂଘର୍ଷର ଫଳାଫଳ ଦୁଇ ତରଫର ସଂଗଠନ ଓ ଏକତା ଉପରେ ନିର୍ଭର କରେ ।

ଯେ ପର୍ଯ୍ୟନ୍ତ ଶ୍ରମିକମାନଙ୍କର ସଂଗଠନ ନାହିଁ ସେ ପର୍ଯ୍ୟନ୍ତ ମାଲିକ ମନଖୁସି ବ୍ୟବହାର କରେ, ମନଇଚ୍ଛା ଶ୍ରମିକକୁ ବାହାର କରିଦିଏ । କିନ୍ତୁ ଟ୍ରେଡ୍ ଇଉନିୟନ ଆନ୍ଦୋଳନ ବା ଶ୍ରମିକ ଆନ୍ଦୋଳନ ହେଲା ପରେ ଅବସ୍ଥାର ପରିବର୍ତ୍ତନ ହୁଏ । ପୂର୍ବରୁ ସେ ବ୍ୟକ୍ତିଗତ ଶ୍ରମିକ ସହିତ କଥାବାର୍ତ୍ତା ବା ଚୁକ୍ତି କରୁଥିଲା । କିନ୍ତୁ ବର୍ତ୍ତମାନ ସେ ଟ୍ରେଡ୍ ଇଉନିୟନ ସହିତ ବା ସଂଗଠିତ ଶ୍ରମିକ ସହିତ କଥାବାର୍ତ୍ତା କରିବାକୁ ବାଧ୍ୟ ହୁଏ । ସଂଗଠିତ ଆନ୍ଦୋଳନର ସାମନା କରେ ।

ଶ୍ରମିକ ସଂଗଠିତ ହେଲାଣି ମାଲିକମାନେ ମଧ୍ୟ ସଂଗଠିତ ହୁଅନ୍ତି । ନାନାପ୍ରକାର ଫନ୍ଦିଫିକର କରନ୍ତି । ନିଜର ମାଲିକ ସଂଘ ଗଢ଼ି ବହୁପ୍ରକାରର ଚେଷ୍ଟା ପାଆନ୍ତି ।

କେବଳ ଯେ ଟ୍ରେଡ୍ ଇଉନିୟନ ବା ଅର୍ଥନୈତିକ ଶ୍ରମିକ ଆନ୍ଦୋଳନ ହୋଇଗଲେ ପୁଞ୍ଜିପତି ବା ମାଲିକଙ୍କ ଶୋଷଣ ଲୋପ ପାଇଯାଏ ତାହା ନୁହେଁ । ଏତିକି ହୁଏ ଯେ, ସେମାନଙ୍କ ଦାଉ କମେ, ମନମୁଖୀ ଶୋଷଣରେ ବାଧା ଆସେ । ପ୍ରକୃତପକ୍ଷରେ ପୁଞ୍ଜିବାଦୀ ଶୋଷଣ ଲୋପ କରିବାକୁ ହେଲେ ପୁଞ୍ଜିବାଦର ଲୋପ ଦରକାର ଏହା କେବଳ ବିପ୍ଳବ ଦ୍ୱାରହିଁ ସମ୍ଭବ । ପୁଞ୍ଜିବାଦ ଲୋପ ପାଇଲେ, ଶ୍ରେଣୀଶୋଷଣ ଲୋପ ପାଏ । ମଣିଷର ଦୁଃଖ ରାତି ପାହେ ।

## ମଜୁରିର ପ୍ରକାର

ପୁଞ୍ଜିପତିମାନେ ନାନାପ୍ରକାରର ମଜୁରି ଧାର୍ଯ୍ୟ କରନ୍ତି । ଟାଇମ ୱାର୍କ, ପିସ୍ ୱାର୍କ ଓ ଟାଇମ ୱାର୍କ ପିସ ୱାର୍କ ମିଶେଇ ଗୋଟାଏ ପ୍ରକାର—ଏହିପରି ନାନା ପ୍ରକାରରେ ମଜୁରି

ଦେବାର କାଇଦା କରନ୍ତି । ସେମାନଙ୍କ ମଧ୍ୟରୁ ଟାଇମ ଓ୍ୟାର୍କ ଓ ପିସ୍ ଓ୍ୟାର୍କ ପ୍ରଧାନ ।

ସାଧାରଣତଃ ମନେହୁଏ ଯେ, ଟାଇମ ଓ୍ୟାର୍କ ଓ ପିସ୍ ଓ୍ୟାର୍କ ଦୁଇଟି ଏକେବାରେ ପୃଥକ । କିନ୍ତୁ ପ୍ରକୃତରେ ତାହା ନୁହେଁ । ଦୁଇଟି ଯାକ ସମାନ । କେବଳ ମାଲିକର ସୁବିଧା ନେଇ ସେ ଭିନ୍ନ ଭିନ୍ନ ରକମର ଧାରା ପ୍ରୟୋଗ କରେ ।

ମାଲିକ ଯେତେବେଳେ ଜାଣେ ଯେ, ଏହି ସମୟ ଭିତରେ ଏତିକି ଉତ୍ପାଦନ ହୋଇପାରିବ ସେ ସେହି ଅନୁସାରେ ଏକ ଦିନକୁ ବା ସାତ ଦିନକୁ ମଜୁରି ଧାର୍ଯ୍ୟ କରେ ।

## ଟାଇମ୍ ଓ୍ୟାର୍କ

ଟାଇମ ଓ୍ୟାର୍କ (ଏକ ଦିନକୁ ବା ସାତଦିନକୁ ବା ମାସକୁ ମଜୁରି ଧାର୍ଯ୍ୟ କରିବାକୁ ଟାଇମ ଓ୍ୟାର୍କ କହନ୍ତି ) କାହିଁକି ଧାର୍ଯ୍ୟ କରାଯାଏ ? ମାଲିକର ଏଥିରେ କି ସ୍ୱାର୍ଥ ଅଛି ? ଯେଉଁଠି ମାଲିକ ଜିନିଷର ଭଲ ମନ୍ଦ ଉପରେ ବେଶି ଜୋର ଦିଏ ସେଠି ସେ ଟାଇମ ଓ୍ୟାର୍କ ଧାର୍ଯ୍ୟ କରେ । ଗୋଟିଏ ଜାତ ପାଣି ବା ଫାନସି ଜିନିଷ ଯଦି ବଜାରରେ ବେଶି ଭଲ ବୋଲି ବିବେଚିତ ହେଲା ସେଠାରେ ମାଲିକ ତାର ଦାମ ଉଠାଇ ନେଲା । ତେଣୁ ଭଲ କାରିଗରକୁ ( Skilled labour) ମାଲିକ ଟାଇମ ଓ୍ୟାର୍କରେ ରଖେ । ତେଣୁ କାରିଗରକୁ ଯେଉଁଠାରେ ଯତ୍ନର ସହିତ କାମ କରିବାକୁ ପଡ଼େ ସେଠାରେ ଟାଇମ ଓ୍ୟାର୍କ ଦ୍ୱାରାହିଁ ମାଲିକ ବେଶି ଲାଭ ପାଏ ।

## ପିସ୍ ଓ୍ୟାର୍କ

ଯେଉଁଠାରେ ମାଲିକ ଗୁଣକୁ ନୁହେଁ, ବେଶି ଜିନିଷ ଉତ୍ପାଦନ ହେବ ବୋଲି ସେ ଜିନିଷର ପରିମାଣ ଉପରେ ଜୋର ଦିଏ। ଯେପରି ଗୋଟିଏ ଶ୍ରମିକ ଦିନକୁ ୪୮ ଡଜନ କାଚ ଘସି ସମ୍ପୂର୍ଣ୍ଣ କଲେ ଟ ୦.୯୬ ପଇସା ପାଇବ। ତେଣୁ ଯେତେ ବେଶି ପରିମାଣ କାମ ଅଳ୍ପ ସମୟରେ ଆଦାୟ ହେବ ସେତେ ବେଶି ମାଲିକର ଲାଭ।

ଶ୍ରମିକମାନଙ୍କ କାମକୁ ଜଗି ରଖିବା, ମଝିରେ ମଝିରେ କାମ ତଦାରଖ କରିବାରୁ ମାଲିକ ଅବ୍ୟାହତି ପାଏ। ଏହାଦ୍ୱାରା ତାକୁ ଅନ୍ୟ କାମ ପାଇଁ ସମୟ ମଧ୍ୟ ମିଳେ।

ପୁଞ୍ଜିବାଦୀ ଯୁଗରେ ପିସ୍ ଓ୍ୟାର୍କହିଁ ଶୋଷଣକୁ ଜଟିଳ କରାଏ। ଶ୍ରମିକର ଅବସ୍ଥା ଦିନକୁ ଦିନ ଖରାପ ହୁଏ।

## ବୋନସ

ପୁଞ୍ଜିପତିମାନେ ସମୟ ସମୟରେ ମଜୁରିର କିଛି ଅଂଶ ବୋନସ ହିସାବରେ ଦିଅନ୍ତି। ଘାସ କେରିଏ ଦେଇ ଦୁଧ ଦୁହିଁବା ଗାଈକୁ ସାର। ମାଲିକ ଭାବେ ଏପରି ବର୍ଷକରେ ୧୫ ଦିନ ମାସେ ବା ଦେଢ଼ ମାସର ମଜୁରି ଦେଇ ଦେଲେ ଶ୍ରମିକମାନେ ଅଧିକ ବେଶି ଉତ୍ସାହରେ କାମ କରିବେ।

ଏହାଦ୍ୱାରା ସେମାନେ ଶୋଷଣ କଳକୁ ଅଧିକ ମଜଭୁତ କରନ୍ତି। ଟୋକେ ପିଇ ଦଣ୍ଡେ ଜାଇଁ ଭଳି ଶ୍ରମିକ ଭୁଲି ଦୁଃଖ କଷ୍ଟ ନିର୍ଯାତନା ଭିତରେ ଦେଇ ଜୀବନ କାଟେ।

# ପୁଞ୍ଜିବାଦ କିପରି ଜନସାଧାରଣଙ୍କୁ ଦରିଦ୍ର କରି ପକାଏ ?

ବେଶୀ ଲାଭ ମାରିବାର ପ୍ରବଳ ଆକାଂକ୍ଷା ଓ ତୀବ୍ର ପ୍ରତିଦ୍ୱନ୍ଦ୍ୱ ପୁଞ୍ଜିବାଦୀକୁ ତାର କଲକାରଖାନା ଗୁଡ଼ିକୁ ବେଶୀ ସୁଦୃଢ଼ କରିବା ପାଇଁ ଓ ଆହୁରି ଉନ୍ନତ ଧରଣର କଲକାରଖାନା ବସାଇବା ପାଇଁ ବାଧ୍ୟ କରାଏ । ତାହାହେଲେ ତାର ଉତ୍ପାଦନ ପ୍ରଣାଳୀରେ ସଂଗଠନ ଆହୁରି ସୁଶୃଙ୍ଖଳ ହେବ ଓ କମ୍ ସମୟରେ, କମ୍ ପଇସାରେ ବେଶୀ ଉତ୍ପାଦନ ହୋଇ ବେଶୀ ଲାଭ ହୋଇ ପାରିବ । ଲାଭ ମାରିବାର ଆକାଂକ୍ଷା ଯେତିକି ବଢ଼େ ବଜାରରେ ପ୍ରତିଦ୍ୱନ୍ଦ୍ୱତା ସେତିକି ବଢ଼େ । ତେଣୁ ପୁଂଜିବାଦୀ ତାର ଅନ୍ୟାନ୍ୟ ପୁଂଜିବାଦୀ ପ୍ରତିଦ୍ୱନ୍ଦ୍ୱମାନଙ୍କୁ ହଟାଇ ନିଜେ ବଜାର ଦଖଲ କରିବାକୁ ତାର ଉତ୍ପାଦନର ଉପକରଣ ଗୁଡ଼ିକ ମଧ୍ୟ ସେହିପରି ଉନ୍ନତ ଧରଣର କରି ଓ ସଂଖ୍ୟାରେ ବଢ଼ାଏ । ସେଥିପାଇଁ ସେ ଯେଉଁ ଲାଭ କରେ ସେଇ ଲାଭରେ ନୂଆ ନୂଆ ଫ୍ୟାକ୍ଟେରୀ ଓ କଲକାରଖାନା ବସାଏ । ଏହାଦ୍ୱାରା ଦୁର୍ବଳ ପ୍ରତିଦ୍ୱନ୍ଦ୍ୱୀମାନଙ୍କର କଲକାରଖାନା କିଣି ପକାଏ । ଏହିପରି ଭାବରେ ଉତ୍ପାଦନ ଗୋଟିଏ ଅଡ଼େ ପୁଞ୍ଜୀଭୂତ ହେଉଥାଏ ଏବଂ ଅନ୍ୟ ଅଡ଼େ ବଡ଼ ବଡ଼ ପୁଂଜିବାଦୀମାନଙ୍କ ହାତରେ ପୁଂଜି କେନ୍ଦ୍ରୀଭୂତ ହେଉଥାଏ । ଅର୍ଥାତ ବଡ଼ ବଡ଼ ପୁଂଜିବାଦୀମାନେ ବଜାରର ପଣ୍ୟଦ୍ରବ୍ୟ ନିଜର ଏକଚାଟିଆ କରନ୍ତି ଓ ସେଇ ହେତୁ ସେମାନଙ୍କ ହାତରେ ପୁଂଜି ମଧ୍ୟ ଏକାଠି ହୋଇ ରହେ । ପୁଂଜିବାଦୀ-ଉତ୍ପାଦନ ବଢ଼ିବା ଅନୁପାତରେ ପୁଂଜି କେନ୍ଦ୍ରୀଭୂତ ହୁଏ ଓ ଛୋଟ ଛୋଟ ପୁଂଜିବାଦୀ ଉତ୍ପାଦନକାରୀମାନେ କ୍ରମେ କ୍ରମେ ବଡ଼ ବଡ଼

ପୁଞ୍ଜିବାଦୀମାନଙ୍କ ଦ୍ୱାରା ବ୍ୟବହୃତ ହୁଅନ୍ତି । ଏହା ଉତ୍ପାଦନର ଉପକରଣମାନଙ୍କର ପ୍ରୟୋଗ ଶିଳ୍ପ ( Technic )ର ଉନ୍ନତି ଯୋଗୁଁ ସାହାଯ୍ୟ ପାଏ । କଳ ମାଲିକ ତାହାର ଉତ୍ପାଦନର ଉପକରଣଗୁଡ଼ିକର ବୈଜ୍ଞାନିକ ଉନ୍ନତି କରିବା ଦ୍ୱାରା ବିଜ୍ଞାନ ଓ ନୂତନ ନୂତନ ଆବିଷ୍କାର ପ୍ରତି ଗାଲ୍ ଯେ ଅଦମ୍ୟ ଉତ୍ସାହ ଦେଖାଏ ତାହା ନୁହେଁ, ସେ କେବଳ ନିଜର ପ୍ରତିଦ୍ୱନ୍ଦୀ ପାଖରେ ଯେପରି ଦୁର୍ବଳ ନ ହୋଇ ବଜାର ଦଖଲ୍ କରି ବେଶୀ ଲାଭ ମାରି ପାରିବ, ସେଥିପାଇଁ ମଧ୍ୟ ସେ ତାର କଳକାରଖାନା ଗୁଡ଼ିକ ଅତ୍ୟନ୍ତ ବୈଜ୍ଞାନିକ ଭାବରେ ତିଆରି କରେ ଏବଂ ଏହାଦ୍ୱାରା ସେ ନିଜର ପ୍ରତିଦ୍ୱନ୍ଦୀ ବିରୁଦ୍ଧରେ ଅଧିକ ସବଳ ହେବା ପାଇଁ ଚେଷ୍ଟା କରେ ।

କଳକାରଖାନା ଯେତିକି ଉନ୍ନତ ଧରଣର ହୋଇଥାଏ ଓ ଯେତିକି ଶୀଘ୍ର କାର୍ଯ୍ୟ କରେ ତାହା ଶ୍ରମିକଙ୍କୁ ସେହିପରି ଭାବରେ କଷ୍ଟ ଦିଏ । କଳକାରଖାନା ଉନ୍ନତ ଧରଣର ହେଲେ ଶ୍ରମିକର ସେତିକି ଖଟଣି ବଢ଼େ ଅର୍ଥାତ୍ ତାର କାର୍ଯ୍ୟ ନିର୍ଦ୍ଦିଷ୍ଟ ସମୟଭିତ ସେ ଏତେ ପରିଶ୍ରମ କରେ ଯେ, ତାହା ତାର ଶରୀର ଉପରେ ଅଷ୍ଟ ଅଣେ । ଅନେକେ ଭାବି ପାରନ୍ତି ଯେ, ଉନ୍ନତ ଧରଣର କଳକାରଖାନା ହେଲେ ପରିଶ୍ରମ କମ୍ ପଡ଼େ ଓ ଜିନିଷ ଉତ୍ପାଦନ କରିବା ସହଜସାଧ୍ୟ ହୁଏ । କିନ୍ତୁ ଏ ଧାରଣା ଭୁଲ, କାରଣ କଳର ଉନ୍ନତି ଦ୍ୱାରା ମାଲିକର ସୁବିଧା ହୁଏ, ଶ୍ରମିକର ହୁଏ ନାହିଁ । ଶ୍ରମିକର ଏହାଦ୍ୱାରା କୌଣସି ଲାଭ ହୁଏ ନାହିଁ, ମୂଲ ବଢ଼େ ନାହିଁ ବା ପରିଶ୍ରମ କରିବାର ସମୟ କମେ ନାହିଁ; ତେଣୁ ବହୁତ ଉନ୍ନତ ଧରଣର କଳକାରଖାନା ଦ୍ୱାରା ତାର ଶାରୀରିକ ଖଟଣିର ପ୍ରାବଲ୍ୟ ଏବଂ ପ୍ରାଚୁର୍ଯ୍ୟ ବଢ଼େ । ସେ ଅତ୍ୟନ୍ତ ଅତ୍ୟନ୍ତ ରୋଗୀ ହୋଇଯାଏ ଓ ମୃତାହାରର ସଂଖ୍ୟା ବୃଦ୍ଧି କରେ ।

ବରଂ ଅଧୁନା ଭଲ ଭଲ ଉନ୍ନତ ଧରଣର କଳକାରଖାନା ସାହାଯ୍ୟରେ ପୁଞ୍ଜିବାଦୀ—ଅଧିକା ଲାଭ ( Surplus value ) କରେ ଅର୍ଥାତ୍ ସେ ଶ୍ରମିକଠାରୁ ଏହାଦ୍ୱାରା ଅଧିକ ବେଶୀ ଶୋଷଣ କରେ । ପ୍ରୟୋଗ ଶିଳ୍ପର ଉନ୍ନତି ଦ୍ୱାରା (Technical progress) ଓ ପୁଞ୍ଜିବାଦୀ ସଂସ୍ଥାକୁ ମଜବୁତ କରିବା ଦ୍ୱାରା ବ୍ୟକ୍ତିଗତ ଶ୍ରମିକ ତଥା ଶ୍ରମିକଶ୍ରେଣୀକୁ ବେଶୀ ଶୋଷଣ କରେ । କଳକାରଖାନାକୁ ଉନ୍ନତ ଧରଣର କରିବା ଦ୍ୱାରା ବା ଯେଉଁ କଳକାରଖାନା ସ୍ତୁଦ୍ରଙ୍କ ଦୁଇ ଘଣ୍ଟାରେ ୨୦୦ ଲୁଗା କରି ପାରୁଥିଲେ, ସେ ସ୍ତୁନ୍ଦଙ୍କ ଅଧଘଣ୍ଟାକରେ ସେତିକି ଲୁଗା ଉତ୍ପାଦନ କରାଇବା ଦ୍ୱାରା ପୁଞ୍ଜିବାଦୀ ବେଶୀ ଲାଭମାରେ ଓ କମ୍ ଲୋକ ଖଟାଏ ।

ଗୋଟାଏ ସିଫ୍ଟରେ ( Shift ) ବା ବଦଳାରେ ଯେଉଁଥିରେ ୧୦ ଜଣ ଲୋକ ଦରକାର ହେଉଥିଲେ ସେଠାରେ ପାଞ୍ଚ କି ଛଅ ଜଣରେ କାମ ହୁଏ । ହାତରେ କାମ କରିବା ଦ୍ୱାରା ଯେଉଁଠାରେ ଶହ ଶହ ଲୋକ ଦରକାର ହେଉଥିଲେ ତାହା କଳ କାରଖାନା ସାହାଯ୍ୟରେ ସାମାନ୍ୟ କେତେ ଜଣଙ୍କ ତତ୍ତ୍ୱାବଧାନରେ ହୋଇ ପାରୁଛି । ତେଣୁ ଶହ ଶହ ମୂଲିଆ ବା ଶ୍ରମିକ କାମ ନ ପାଇ ବେକାର ହୋଇ ବୁଲନ୍ତି । ପୁଞ୍ଜିବାଦୀ-ଜଗତରେ ଶକାଶ ଏପରି ଭାବରେ ବୁଲୁଥାଏ ଯେ ପୁଞ୍ଜିବାଦୀ ଯେତେ ଶ୍ରମିକ ଦରକାର କରେ ତା ଅପେକ୍ଷା ସେମାନଙ୍କର ଶ୍ରମ ଶକ୍ତି (Labour power ) ବିକ୍ରି କରିବା ପାଇଁ ବ୍ୟାକୁଳ ହେଉଥିବା ଶ୍ରମିକଙ୍କ ସଂଖ୍ୟା ବେଶୀ—ଅର୍ଥାତ୍ ପୁଞ୍ଜିବାଦୀ ତାର କଳକାରଖାନାକୁ ପୂର୍ବ ଅପେକ୍ଷା ଏପରି ଉନ୍ନତ ଧରଣର କଳକାରଖାନା କରେ ବା ଅନ୍ୟ କଥାରେ କହିବାକୁ ଗଲେ ଏପରି ନୂଆ ନୂଆ ଧରଣର କଳକାରଖାନା ଖଂଜେ ଯେ ତା ଦ୍ୱାରା ଖୁବ କମ ଲୋକରେ ତାର

କାମ ହାସଲ ହୁଏ । ତେଣୁ ବେଶି ଶ୍ରମିକ ବେକାର ହୋଇ ବସନ୍ତି ଓ ପୁଂଜିବାଦୀର ଉଦ୍ଦେଶ୍ୟ ଅନୁଯାୟୀ ମଜୁରି କମିଯିବା ପାଇଁ ପଶୁଭଳି ଖଟି ଥାଆନ୍ତି । ପୁଞ୍ଜିବାଦୀ ବଡ଼ ବଡ଼ ଓ ଶକ୍ତିଶାଳୀ କଳ ବସାଇବା ଦ୍ୱାରା ଉତ୍ପାଦନର ପ୍ରଣାଳୀ ଏତେ ସହଜ ହୋଇଯାଏ ଯେ, ସୁଦକ୍ଷ (Skilled) ଶ୍ରମିକ ବଦଳରେ ନୂଆ ସାଧାରଣ ଶ୍ରମିକ ନିଯୁକ୍ତ କରେ ବା ସେମାନଙ୍କ ଜାଗାରେ ସ୍ତ୍ରୀ ଓ ପିଲାମାନଙ୍କୁ ଆଣି କାମରେ ଲଗାଏ । ସ୍ତ୍ରୀ ଓ ପିଲାମାନଙ୍କୁ କାମରେ ଲଗାଇବା ଦ୍ୱାରା ପୁଞ୍ଜିବାଦୀର ବିଶେଷ ଲାଭ ହୁଏ। ଏହି ବିଶେଷ ଲାଭ ଦୁଇପ୍ରକାର-ପ୍ରଥମତଃ ସ୍ତ୍ରୀ ଓ ପିଲାମାନେ କମ ମଜୁରିରେ କାମ କରନ୍ତି ଏବଂ ଦ୍ୱିତୀୟତଃ ଶ୍ରେଣୀ ସଂଘର୍ଷବେଳେ ବା ଶ୍ରମିକମାନେ ଧର୍ମଘଟ କଲାବେଳେ ଏହି ସ୍ତ୍ରୀ ଓ ବାଳକମାନେ ଧର୍ମଘଟରେ ଯୋଗ ଦେଇ ପାରନ୍ତି ନାହିଁ ।

କଳକାରଖାନା ସାହାଯ୍ୟରେ ଉତ୍ପାଦନ କରିବା ଯେତିକି ଯେତିକି ବଢିଲା ସେତିକି ସେତିକି ଛୋଟ ଛୋଟ କୁଟୀରଶିଳ୍ପ ଲୋପ ପାଇଯିବାକୁ ବସିଲା । ଗାଁମାନଙ୍କରେ କମାରମାନେ ଯେଉଁ-ସବୁ ଭଲ ଭଲ ଲୁହା ଜିନିଷ ଓ ପାଳଙ୍କବଢ଼େଇ ତିଆରି କରୁଥିଲେ ସେ ସବୁ ଆଉ ଦେଖିବାକୁ ମିଳୁ ନାହିଁ । ବଡ଼ ବଡ଼ କଳକାରଖାନା ଆଗରେ ସେମାନେ ଆଉ ତିଷ୍ଠି ପାରିଲେ ନାହିଁ । କାହିଁକି ? ବଡ଼ ବଡ଼ କଳକାରଖାନାମାନ ଜିନିଷ ସବୁ ଏତେ ଶସ୍ତାରେ ଏତେ ପରିମାଣରେ ଓ ଏତେ ପ୍ରକାରରେ ତିଆରି କରି ବଜାରରେ ଜମା କରିଦେଲେ ଯେ, ଛୋଟ ଛୋଟ କୁଟୀରଶିଳ୍ପ ଅନୁଷ୍ଠାନ ଗୁଡ଼ିକ ସେମାନଙ୍କ ସାଙ୍ଗରେ ତାଳ ଦେଇ ତିଷ୍ଠି ରହିବା ଅସମ୍ଭବ ହେଲା ?

ପୁଞ୍ଜିବାଦ ଛୋଟ ଛୋଟ ଚାଷୀମାନଙ୍କୁ ମଧ୍ୟ ଲୋପ କରିଦିଏ । କାରଣ ବଡ଼ ବଡ଼ ପୁଞ୍ଜିବାଦୀ ଚାଷୀ ଓ ଜମିଦାରମାନେ ସେମାନଙ୍କଠାରୁ ଜମିଗୁଡ଼ିକ ଅଳ୍ପେ ଅଳ୍ପେ କିଣି ନେଇ ସେମାନଙ୍କୁ ନିଃସ୍ୱ କରିଦିଅନ୍ତି ।

ତେଣୁ ଛୋଟ ଛୋଟ ଶିଳ୍ପାନୁଷ୍ଠାନର ମାଲିକ, କାରିଗର, ଛୋଟ ଛୋଟ ବ୍ୟବସାୟୀ ଓ ଚାଷୀମାନେ ବାଧ୍ୟ ହୋଇ ମୂଳ ଲଗାନ୍ତି ଓ କ୍ରମେ ସର୍ବହରା ଶ୍ରେଣୀରେ ପରିଣତ ହୋଇ ବେକାର ସମସ୍ୟା ବଢ଼ାନ୍ତି । ଏଥିରୁ ଦେଖାଯାଉଅଛି ଯେ, ବେକାର ସମସ୍ୟା ପୁଞ୍ଜିବାଦର ଅନିବାର୍ଯ୍ୟ ଫଳ । ବେକାର ସମସ୍ୟା ସବୁବେଳେ ଲାଗି ରହିବାରୁ ବା ସବୁବେଳେ ଶହ ଶହ ଶ୍ରମିକ କାମ ପାଇବା ଲାଗି ଠିଆ ରହିବା ହେତୁ ପୁଞ୍ଜିବାଦୀ ଇଚ୍ଛା ମୁତାବକ ମଜୁରି କମେଇ ଦେଇ ବା କାମ କରିବା ସମୟ ବଢ଼େଇ ଦେଇ ନାନାପ୍ରକାର ଶୋଷଣ କରିବାକୁ ସୁବିଧା ପାଏ ।

ପୁଞ୍ଜିବାଦୀ ଦେଶମାନଙ୍କରେ ହଜାର ହଜାର ସଂଖ୍ୟାରେ ଶ୍ରମିକ ପୁଂଜିବାଦ ଦାଉରେ ସର୍ବସ୍ୱ ହରାଇ ଦୁଃସ୍ଥ, ନିଃସ୍ୱ ଅବସ୍ଥାରେ ରହିଥିବା ହେତୁ ଶ୍ରମିକମାନଙ୍କ ସାଧାରଣ ଜୀବନରେ ତାହା ପ୍ରଭାବ ଆଣି ପକାଏ । ଅର୍ଥାତ୍ କୌଣସି ଶ୍ରମିକର କୌଣସି କାମରେ ସ୍ଥାୟୀ ହୋଇ ରହିବାର ଭରସା ନ ଥାଏ । ଅସନ୍ତା କାଲି ଶ୍ରମିକ ଯେ ତାର ସେହି କାମରେ ଥିବ ଓ ମଜୁରି ପାଇବ ଏହା ତାର ବିଶ୍ୱାସ ନ ଥାଏ । କାରଣ ପ୍ରତିଦିନ ଛୋଟ ଛୋଟ ଚାଷୀ ସର୍ବସ୍ୱ ହରାଇ କଳ ଓ ଫାକ୍ଟେରି ଆଗରେ କାମ ପାଇଁ ଧାରଣା ଦିଅନ୍ତି । ତାଙ୍କ ସହିତ ହଜାର ହଜାର ଶ୍ରମିକ ମଧ୍ୟ ବେକାର ହୋଇ-ଯାଆନ୍ତି । ଏହିରୂପେ ବେକାର ସଂଖ୍ୟା ବଢ଼େ । ଏହାଦ୍ୱାରା କାମ

କରୁଥିବା ଶ୍ରମିକମାନଙ୍କର ଆଶଙ୍କା ଥାଏ ଯେ, ମାଲିକ ସେମାନଙ୍କୁ କାମରୁ ଅନ୍ତର କରି ବାହାରେ ଥିବା ବେକାର ଲୋକଙ୍କୁ କମ ପଇସାରେ ଆଣି କାମରେ ଲଗେଇବ । ଏହିପରି ଭାବରେ ଗଣ୍ଡାଏ ଖାଇ ବଞ୍ଚି ରହିବାର ଅନିଶ୍ଚୟତା ଓ ସାଧାରଣ ଦାରିଦ୍ର୍ୟ ଦିନକୁଦିନ ବଢେ । ତେଣୁ ଆମେ ଦେଖିଲେଁ ଯେ, ପୁଂଜିବାଦୀ ଶିବିରରେ ଧନ, ବିଳାସ ଓ ଆଳସ୍ୟ ବଢି ଚାଲିଥାଏ ସେତିକି; ସେତିକି ସର୍ବହରାର ସଂଖ୍ୟା ବଢି ଚାଲିଥାଆନ୍ତି ଓ ଦିନକୁଦିନ କେବଳ ଅସ୍ଥିକଙ୍କାଳସାର ହୁଅନ୍ତି ।

ଜନସାଧାରଣଙ୍କର ବର୍ଦ୍ଧିଷ୍ଣୁ ଉତ୍କଟ ଦାରିଦ୍ର୍ୟ ଏବଂ ମଣିଷ ଭଳିଆ ଗୋଟାଏ ପରାଙ୍ଗ-ପୁଷ୍ଟ ଶ୍ରେଣୀ ହାତରେ ଜୀବନର ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟ ଧନ ଦଉଲତ ପୁଂଜୀଭୂତ ବା ଏକାଠି ହେବା ଦ୍ୱାରା ସର୍ବହରା ଓ ବୁର୍ଜୁଆମାନଙ୍କ ଭିତରେ ସଂଘର୍ଷ ତୀବ୍ରତର ହୁଏ ।

## ପୁଞ୍ଜିବାଦର ସଂଘର୍ଷର ଗତ କେଉଁଆଡେ ?

ଆମ୍ଭେମାନେ ପୁଞ୍ଜିବାଦୀ ଦେଶରେ ସମାଜର ଅବସ୍ଥା ଭଲ ଭାବରେ ବୁଝି ପାରିବା, ଯଦି ସେହି ଦେଶର ପୁଂଜିବାଦୀ-ମାନଙ୍କର କାର୍ଯ୍ୟକଳାପ ଓ ଉତ୍ପାଦନ ପ୍ରଣାଳୀର ସ୍ୱରୂପ ଆଲୋଚନା କରୁଁ । ବ୍ୟବସାୟ ଓ ଉତ୍ପାଦନର ପ୍ରକୃତି ଆଲୋଚନା କଲେ ଆମ୍ଭେମାନେ ଦେଖିବା କିପରି ପୁଂଜିବାଦୀମାନେ ନିଜ ନିଜ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ କରି ବଜାରରେ ଯେତେ ପାରନ୍ତି ସେତେ ଜିନିଷ ଆଣି ଜମା କରନ୍ତି । ଯାହାର ଯେତେ ବେଶି ଦ୍ରବ୍ୟ ବଜାରକୁ ଆସି ଶସ୍ତା ଦରରେ ବିକି ହେବ ସେ ସେତିକି ଜଲଦି ତାର ପ୍ରତିଦ୍ୱନ୍ଦୀଙ୍କୁ ହଟେଇ ପାରିବ । ଏହିପରି

ବର୍ଷେ ଦି ବର୍ଷ ତାର ଜିନିଷ ବଜାରରେ ପକାଉଲେ ପରେ
ପୁଂଜିବାଦୀ ଦେଖେ ଯେ, ତାର କେତେଗୁଡ଼ାଏ ଜିନିଷ ବିକି ହୋଇ
ପାରୁ ନାହିଁ ଓ ସେଗୁଡ଼ିକ ବିକା ନ ହୋଇ ବଜାରରେ ପଡ଼ି-
ରହୁଛି ଓ ଅଟେ ଅଟେ ସେଗୁଡ଼ିକର ସଂଖ୍ୟା ବେଶି ହେଉଛି ।
କେବଳ ସେତିକି ନୁହେଁ, ଦର ମଧ୍ୟ କମି ଯାଉଛି; ତେଣୁ ପଇସା ବି
ଆସୁ ନାହିଁ । ପୁଂଜିବାଦୀମାନଙ୍କ ମଧ୍ୟରେ ବଜାରରେ ଜିନିଷ ବିକି
କରିବାର ପ୍ରତିଦ୍ୱନ୍ଦିତା ବଢ଼ିଯାଏ । ସେମାନଙ୍କ ଭିତରେ କେତେକ
କଞ୍ଚାମାଲ୍ କିଣିବା ପାଇଁ ଯେଉଁ କରଜ କରିଥାନ୍ତି ତାହା ସୁଝି
ଦେଇ ପାରନ୍ତି ନାହିଁ । କାରଣ, ସେମାନେ ଯେଉଁ ଜିନିଷ
ବିକି କରିବାପାଇଁ ବଜାରକୁ ଆଣନ୍ତି, ତାହା ବିକି ନ
ହେବାରୁ ସେମାନଙ୍କର ପଇସା ଉଠେ ନାହିଁ; ଜିନିଷଗୁଡ଼ିକ
ସେମିତି ପଡ଼ିରହେ । ତେଣୁ ପୁଂଜିବାଦୀମାନେ ଯେଉଁ ଟଙ୍କା ବା
ପୁଂଜି କଞ୍ଚାମାଲ୍, ମଜୁରି ପ୍ରଭୃତିରେ ଖଟେଇ ଥାଆନ୍ତି; ତାହା
ଫେର ପାଆନ୍ତି ନାହିଁ । ବ୍ୟାଙ୍କଗୁଡ଼ିକ ମଧ୍ୟ ଫେଲ୍ ମାରନ୍ତି ।
କାରଣ ସେମାନଙ୍କ ବ୍ୟାଙ୍କରେ ଜମା ଥିବା ଟଙ୍କା
ସେମାନେ ଚାହିଦା ମୁତାବକ ଦେଇ ପାରନ୍ତି ନାହିଁ । (ପୁଂଜିବାଦୀ-
ମାନେ ସାଧାରଣତଃ ବ୍ୟାଙ୍କରୁ ଟଙ୍କା କରଜ ଆଣି ତାଙ୍କର
ବ୍ୟବସାୟ କରନ୍ତି, ଅବଶ୍ୟ ବଡ଼ ବଡ଼ ପୁଂଜିବାଦୀମାନଙ୍କ କଥା
ଏହାଦ୍ୱାରା ବୁଝାଯାଉ ନାହିଁ ) । ବ୍ୟବସାୟୀ ଓ ଶିଳ୍ପପତି
(Industrialist) ମାନଙ୍କ ଯୋଗୁ ଏହି ବ୍ୟାଙ୍କଗୁଡ଼ିକ ଫେଲ୍
ମାରନ୍ତି । କାରଣ ଏହି ପୁଂଜିବାଦୀ ବ୍ୟବସାୟୀମାନେ ସେମାନଙ୍କ
ଜିନିଷର ଦର କମିଯିବା ହେତୁ ସେମାନଙ୍କର ଖଟେଇ-
ଥିବା ପଇସା ପାଇ ପାରନ୍ତି ନାହିଁ, ତେଣୁ ବ୍ୟାଙ୍କରୁ କରଜ
ଆଣିଥିବା ଟଙ୍କା ଦେଇପାରନ୍ତି ନାହିଁ । ଏହା ଫଳରେ ଅର୍ଥସଂକଟ

ହୁଏ, ଅବଶ୍ୟ ଏହାଦ୍ୱାରା ଶ୍ରମିକମାନେ ବେଶି କଷ୍ଟ ପାଆନ୍ତି ଓ ଦୁଃଖଭୋଗ କରନ୍ତି । କାରଣ ଶ୍ରମିକମାନଙ୍କୁ ହଜାର ହଜାର ସଂଖ୍ୟାରେ କାରଖାନାମାନଙ୍କରୁ ବାହାର କରି ଦିଆଯାଏ ଓ କଳକାରଖାନା ବନ୍ଦ କରି ଦିଆଯାଏ । ବେକାର ସମସ୍ୟା ଓ ଦାରିଦ୍ର୍ୟ ବଢ଼େ । ଲୋକମାନଙ୍କର ଦୁଃଖର ସୀମା ରହେ ନାହିଁ । କେବଳ ସେତିକି ନୁହେଁ, ଯେଉଁ କେତେ ଜଣ କଳକାରଖାନାରେ କାମ କରନ୍ତି ସେମାନଙ୍କର ମଧ୍ୟ ମଜୁରି କମିଯାଏ ।

ଏ ସଂକଟର କାରଣ କଣ ? ଏ ସଂକଟର କାରଣ ହେଉଛି ଉତ୍ପାଦନର ସାମାଜିକ ପ୍ରକୃତି ଓ ବ୍ୟକ୍ତିଗତ ଅଧିକାର ମଧ୍ୟରେ ମୌଳିକ ବିରୋଧିତା । ଅର୍ଥାତ୍ ଯଦି ଏହି ମୌଳିକ ବିରୋଧିତା ନ ଥା'ନ୍ତା ତା ହେଲେ ଏପରି ସଂକଟ ଆସନ୍ତା ନାହିଁ । କିପରି ? ଯଦି ସମାଜ ଏହି ସାମାଜିକ ( ହଜାର ହଜାର ଶ୍ରମିକ ଯେଉଁ ପରିଶ୍ରମ କରନ୍ତି ତାହାର ସମଷ୍ଟି ) ପରିଶ୍ରମ ଦ୍ୱାରା ଉତ୍ପନ୍ନ ହେଉଥିବା ଫଳ ସେହି ସମାଜ ଭିତରେ ବାଣ୍ଟି ଦିଅନ୍ତା, ତାହାହେଲେ ବୁର୍ଜୁଆ ବା ଧନିକଶ୍ରେଣୀ ଜନ୍ମ ହୁଅନ୍ତା ନାହିଁ ବା ରହନ୍ତା ନାହିଁ ଓ କେତେଜଣ ଲୋକ ସମାଜର ବହୁଲୋକଙ୍କ ପରିଶ୍ରମରେ ଧନୀ ହୁଅନ୍ତେ ନାହିଁ । ତେଣୁ ଗୁଡ଼ାଏ ଲୋକ ଦରିଦ୍ର ହୋଇ ଭୋକଉପାସରେ ମରନ୍ତେ ନାହିଁ । ତାହାହେଲେ ଉତ୍ପାଦନର ଅରାଜକତା ହୁଅନ୍ତା ନାହିଁ । ତେଣୁ ସଂକଟ ମଧ୍ୟ ହୁଅନ୍ତା ନାହିଁ । ଏହା ହେଲେ ପୁଞ୍ଜିବାଦ ମଧ୍ୟ ବଞ୍ଚି ରହନ୍ତା ନାହିଁ ।

ଫଳରେ ଆମେ ଦେଖିବାକୁ ପାଇଲୁଁ, ଅର୍ଥନୈତିକ ସଂକଟର ମୂଳ କାରଣ ହେଉଛି ପୁଞ୍ଜିବାଦ ପ୍ରଥା । ଏ ସଂକଟ ଦୂର କରିବାକୁ ହେଲେ ପୁଞ୍ଜିବାଦୀ ପ୍ରଥାକୁ ଧ୍ୱଂସ କରିବାକୁ ହେବ ।

# ପୁଞ୍ଜିବାଦୀମାନେ ସଂକଟରୁ କିପରି ତ୍ରାଣ ପାଆନ୍ତି

ଯଦି ଏପରି ସଂକଟ ହୁଏ ତା'ହେଲେ ତ ପୁଞ୍ଜିବାଦୀ ପ୍ରଥାରେ ଅନ୍ତ ଅସିବ ଓ ପୁଞ୍ଜିବାଦ ଅପେ ଆପେ ମରିଯିବ । କିନ୍ତୁ ନ ମରେ କାହିଁକି ? କାରଣ ହେଉଛି ପୁଞ୍ଜିବାଦୀମାନେ ଅତି ଧୂର୍ତ୍ତତାର ସହିତ ଏ ସଂକଟରୁ ତ୍ରାହି ପାଇଯାଆନ୍ତି । କିପରି ? ସେମାନେ ଯେତେବେଳେ ଦେଖନ୍ତି ଯେ, ତାଙ୍କର ଜିନିଷ ବିକ୍ରି ହେଉ ନାହିଁ, ବଜାରରେ ପଡ଼ି ରହୁଛି, ସେତେବେଳେ ସେମାନେ ଉତ୍ପାଦନ କମ୍ କରନ୍ତି । ଉତ୍ପନ୍ନ ଦ୍ରବ୍ୟର କେତେକ ମଧ୍ୟ ନଷ୍ଟ କରି ଦିଅନ୍ତି । କେତେ କମ ଦରରେ ଜମା ଥିବା ମାଲଗୁଡ଼ିକ ବିକ୍ରି କରି ଦିଅନ୍ତି । ନୂଆ ନୂଆ ବଜାର ଦଖଲ କରି ସେଠାରେ ଜିନିଷ ବିକ୍ରି କରନ୍ତି । ଶ୍ରମିକମାନଙ୍କୁ ଉକ୍ରଟ ଭାବରେ ଶୋଷଣ କରନ୍ତି । ପୁଣି କମ୍ ଦରରେ ଜିନିଷଗୁଡ଼ିକୁ ବିକ୍ରି କରିବାକୁ ଚେଷ୍ଟା କରନ୍ତି । ସେମାନଙ୍କୁ ଲାଭ ତ ଯେ କୌଣସିମତେ କରିବାକୁ ହେବ ! ଏଣେ କମ ଦରରେ ଜିନିଷ ବିକ୍ରି କରିବାକୁ ହେବ, ଅଥଚ ଲାଭ କରିବାକୁ ହେବ । ତେଣୁ ସେମାନେ ସେମାନଙ୍କର କଳକବ୍ଜା କଠୋର ଭାବରେ ଅଧିକ ଉନ୍ନତ କରିବେ ଓ ଏହାଦ୍ୱାରା ସମାଜରେ ଶୀଘ୍ର ଓ କମ ମଜୁରିଆଙ୍କ ଦ୍ୱାରା କାମ କରାଇପାରିଲେ କିପରି ବିଶେଷ ଲାଭ ପାଇବେ, ଅଥଚ କମ ଦାମରେ ଜିନିଷପତ୍ର ବିକ୍ରି କରିବେ, ସେଥିପାଇଁ ସେମାନେ ଚେଷ୍ଟା କରନ୍ତି । ତେଣୁ ଉନ୍ନତ ଓ ନୂଆ ଧରଣର କଳକବ୍ଜାର ଦରକାର ପଡ଼ିବାରୁ ତାର ଦାମ ମଧ୍ୟ ସେତିକି ବେଶୀ ହୁଏ ଓ ଶିଳ୍ପବାଣିଜ୍ୟର ଏହି ବିଶିଷ୍ଟ ଅନୁଷ୍ଠାନଗୁଡ଼ିକ ବଢ଼େ, ଶ୍ରମିକମାନଙ୍କ

ଭିତରୁ ଅନେକ ଏଥିରେ ଟାମ ଭରିବାକୁ ଉତ୍ସୁକ ହୁଅନ୍ତି । ଶ୍ରମିକମାନଙ୍କ ହାତରେ ପୁଣି କଞ୍ଚା ପଇସା ପଡ଼େ । ତେଣୁ ବ୍ୟବହାର୍ଯ୍ୟ ଜିନିଷର ବେଶି ଦରକାର ପଡ଼େ । ପୁଣି ଲୁଗା ଖାଦ୍ୟ ଓ ଅନ୍ୟାନ୍ୟ ଜିନିଷ ତିଆର ହୁଏ । ପୁଣି ପୁଞ୍ଜିବାଦୀମାନଙ୍କର ଗୋଟାଏ ସ୍ୱଚ୍ଛଳ ଅବସ୍ଥା ଆସିଯାଏ । ଅର୍ଥସଂକଟ ପରେ କିଛୁଦିନ ଏପରି ସ୍ୱଚ୍ଛଳ ଅବସ୍ଥା ପୁଣି ଥରେ ଅର୍ଥସଂକଟ ହେବା ପର୍ଯ୍ୟନ୍ତ ଚାଲେ । ଏହିପରି ପ୍ରତି ଦଶ ବାର ବର୍ଷରେ ପୁଞ୍ଜିବାଦୀ ଦେଶରେ ଅର୍ଥସଂକଟ ଆସି ପହଞ୍ଚେ । ପ୍ରଥମ ସାଧାରଣ ଅର୍ଥସଂକଟ ୧୮୨୫ ମସିହାରେ ହୋଇଥିଲା । ତା'ପରେ ବରାବର ଅର୍ଥସଂକଟ ଲାଗିରହିଛି । ୧୮୩୬, ୧୮୪୭, ୧୮୫୭, ୧୮୬୬, ୧୮୭୩, ୧୮୮୨, ୧୮୯୦, ୧୯୦୭ ମସିହା ଗୁଡ଼ିକରେ ଅର୍ଥସଂକଟ ପଡ଼ିଥିଲା । ୧୯୧୪ ମସିହାରେ ଯେଉଁ ଅର୍ଥସଂକଟ ହୋଇଥିଲା ତାହା ଯୁଦ୍ଧଯୋଗୁଁ ବେଶି ବଢ଼ି ପାରିଲା ନାହିଁ । କାରଣ ଯୁଦ୍ଧର ଆବଶ୍ୟକତା ଯୋଗୁଁ ବହୁଲୋକ ଯୁଦ୍ଧ ଜିନିଷର ଉତ୍ପାଦନ ପାଇଁ ଲାଗିପଡ଼ିଲେ । ଫଳରେ ସଂକଟ ଏଡ଼ି ହୋଇଗଲା । ତା ପରେ ୧୯୨୧ରେ ଏ ସଂକଟ ଦେଖା ଦେଇଥିଲା ଏବଂ ୧୯୨୯ରେ ଯେଉଁ ଅର୍ଥସଂକଟ ହୋଇଥିଲା ତାହା ଅତି ଭୟାବହ । ୧୯୨୯ମସିହାର ଅର୍ଥସଂକଟ ୧୯୨୫ମସିହାଠାରୁ ବଡ଼ ହୋଇଥିଲା ଏବଂ ଏହା ପୃଥିବୀର ଯେଉଁ ଯେଉଁ ଦେଶରେ ପୁଞ୍ଜିବାଦ ବୃଦ୍ଧି ପାଇଛି ସେହି ସେହି ଦେଶକୁ ଗ୍ରାସ କରିଥିଲା । ତେଣୁ ଏହି ପୁଞ୍ଜିବାଦୀ ସଂକଟଗୁଡ଼ିକ ଠିକ୍ କେତେ କେତେ ବର୍ଷ ଛାଡ଼ିକରି ହୁଏ । ଅଧିକନ୍ତୁ ମଧ୍ୟ ସାମ୍ରାଜ୍ୟବାଦୀ ଦେଶଗୁଡ଼ିକ ଏ ସଂକଟ ଏଡ଼ିବା ପାଇଁ କୌଣସି କୌଣସି ଯୁଦ୍ଧରେ ପ୍ରବୃତ୍ତ ହୋଇଯାନ୍ତି । ଉଦାହରଣ ସ୍ୱରୂପ ସ୍ପେନର ଅନ୍ତର୍ବିପ୍ଳବରେ ସାମ୍ରାଜ୍ୟବାଦୀ ଦେଶ-

ଗୁଡିକ ଯୋଗ ଦେଇ ସେମାନଙ୍କ ଭିତରର ସଂକଟଗୁଡ଼ିକ ଏଡ଼ିବାକୁ ସମର୍ଥ ହୋଇଥିଲେ । ୧୯୨୯ ମସିହା ଅର୍ଥସଂକଟ ଏପରି ଭୀଷଣ ଆକାର ଧାରଣ କରିଥିଲା ଯେ ପୁଂଜିବାଦର ଇତିହାସରେ ଆଜି ତାର ତୁଳନା ନାହିଁ । କମ୍ରେଡ୍ ଷ୍ଟାଲିନ୍ ଏହି ସଂକଟ ବିଷୟରେ କହିଥିଲେ ଯେ, "ଏପରି ଅର୍ଥସଂକଟ ଆଉ କେବେ ପୃଥିବୀକୁ ଗ୍ରାସ କରି ନ ଥିଲା ।"

ପ୍ରତି ସଂକଟ ପରେ ପୁଂଜିବାଦ ଏପରି ଭାବରେ ବୃଦ୍ଧିପାଏ ଯେ ଜନସାଧାରଣଙ୍କର ଅବସ୍ଥା ଅସ୍ତେ ଅସ୍ତେ ଅତି ଖରାପ ହୋଇଯାଏ । ଲେନିନ୍ କହିଥିଲେ—"ପ୍ରତ୍ୟେକ ସଂକଟ ପରେ ଶ୍ରମିକମାନେ ଦରିଦ୍ରରୁ ଦରିଦ୍ରତର ହୋଇ ଯାଆନ୍ତି ।" ଶ୍ରମିକ ପୂର୍ବ ଅପେକ୍ଷା ଅଧିକ ଦୁର୍ଦ୍ଦଶା ଅବସ୍ଥାରେ ରହେ; ଅତି ଖରାପ ଭାବରେ ଓ କଷ୍ଟରେ ଜୀବନଯାପନ କରିବାପାଇଁ ବାଧ୍ୟ ହୁଏ; କମ୍ ଖାଏ ଓ ଅସ୍ତେ ଅସ୍ତେ ତାର ଜୀବନ ଦୁର୍ବହ ହୋଇ ଉଠେ । ସଂକଟ ସମୟରେ ଜନସାଧାରଣଙ୍କର ଦାରିଦ୍ର୍ୟ ବିଶେଷ ଭାବରେ ଉତ୍କଟ ହୋଇଉଠେ ଓ ଏହି ସମୟମାନଙ୍କ ମଧ୍ୟରେ ଜନସାଧାରଣଙ୍କର କ୍ରୋଧ, ପୁଂଜିବାଦୀ ପ୍ରଥା ପ୍ରତି ଅତି ତୀବ୍ର ହୋଇ ଉଠେ । ପୁଂଜିବାଦ ସମାଜର ବିରୋଧିତା ସାମ୍ରାଜ୍ୟବାଦୀ ଯୁଗରେ ଅତି ପରିଷ୍କାରଭାବରେ ପରିସ୍ଫୁଟ ହୁଏ । କାରଣ ସାମ୍ରାଜ୍ୟବାଦ ହେଉଛି ପୁଂଜିବାଦର ପର ଅବସ୍ଥା । ଲେନିନ୍ ତାଙ୍କର ବହିରେ ଏହା ପରିଷ୍କାର ଭାବରେ ଦେଖାଇ ଦେଇଅଛନ୍ତି ଯେ, ପୁଞ୍ଜିବାଦ ସାମ୍ରାଜ୍ୟବାଦର ଶେଷ ଅବସ୍ଥା ଓ ଏହି ଅବସ୍ଥାରେ ଯୁଦ୍ଧ ଓ ବିପ୍ଳବ ହୁଏ । ସର୍ବହରାର ବିପ୍ଳବ ପୂର୍ବରୁ ସାମ୍ରାଜ୍ୟବାଦୀମାନେ ନିଜ ନିଜ ଭିତରେ ସାମ୍ରାଜ୍ୟ ବିସ୍ତାର ପାଇଁ ଯୁଦ୍ଧ କରି ଜନସାଧାରଣଙ୍କୁ ଛାରଖାର କରିଦିଅନ୍ତି ।



# ଦ୍ୱିତୀୟ ଅଧ୍ୟାୟ

## ସାମ୍ରାଜ୍ୟବାଦର ବୈଶିଷ୍ଟ୍ୟ



### ଏକଚାଟିଆ ଇଉନିୟନ ବା ସଂଘ

ଆମ୍ଭେମାନେ ଦେଖିଥାଉଁ ଯେ, କପର ବଡ଼ ବଡ଼ କଳକାରଖାନାମାନ ହେବାଦ୍ୱାରା ସାନ ସାନ କଳକାରଖାନା ଲୋପ ପାଏ ଓ ବଡ଼ ବଡ଼ଗୁଡ଼ିକ ସାନ ସାନଗୁଡ଼ିକଙ୍କୁ ନିଜର ଗର୍ଭକୁ କ୍ଷେପଣ କରନ୍ତି । ବିଶେଷତଃ କୌଣସି ଅର୍ଥସଂକଟ ଭିତରେ ଏହା ବେଶୀ ଘଟେ, ଅର୍ଥାତ୍ ପୁରୁଣାକାଳିଆ ଓ ଛୋଟ ଛୋଟ କଳ-କାରଖାନାମାନ ଉତ୍ପାଦନ ବଜାରରେ ତିଷ୍ଠି ନ ପାରି ଲୋପ ପାଆନ୍ତି । ତେଣୁ ବଡ଼ ବଡ଼ ଉନ୍ନତ ଧରଣର କଳକାରଖାନାମାନ ମୁଣ୍ଡ ଟେକି ଉଠନ୍ତି । ବଡ଼ବଡ଼ କଳକାରଖାନାମାନ ଉତ୍ପାଦନକୁ ଏକତ୍ରିତ କରୁଥିବା ଦ୍ୱାରା ପୁଞ୍ଜିକୁ ମଧ୍ୟ ଏକତ୍ରିତ କରନ୍ତି । ଅନ୍ୟ କଥାରେ କହିବାକୁ ଗଲେ ଛୋଟ ଛୋଟ କଳକାରଖାନାଗୁଡ଼ିକ ଯେତେବେଳେ ଲୋପ ପାଇ କେତେକ ଅଳ୍ପସଂଖ୍ୟକ ପୁଂଜିପତିଙ୍କ ହାତରେ ଉତ୍ପାଦନ କେନ୍ଦ୍ରୀଭୂତ ହେଲା, ସେହିମାନେହିଁ ଉତ୍ପାଦନରୁ ଲବ୍ଧ ଉଠାଇ ପୁଂଜି ଏକତ୍ରିତ କଲେ । ତେଣୁ ଶିଳ୍ପର ଉନ୍ନତି ଓ ବୃଦ୍ଧି ସଙ୍ଗେସଙ୍ଗେ ଛୋଟ ଛୋଟ ଅନୁଷ୍ଠାନଗୁଡ଼ିକ ଲୋପ ପାଇ ଅଳ୍ପସଂଖ୍ୟକ ପୁଂଜିବାଦୀ ମିଲ୍ ଓ କଳମାଲିକଙ୍କ ହାତରେ ପୁଂଜି ରହିଲା । ଅନ୍ୟାନ୍ୟ ପୁଂଜିପତିଦଳଙ୍କଠାରୁ

ବେଶି ଲାଭ ମାରି ଓ ସୁବିଧାରେ ସେମାନଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବାପାଇଁ ଏମାନେ ଏମାନଙ୍କର ସଂଘ ବା ଅନୁଷ୍ଠାନ ଗଢନ୍ତି । ଯଥା :—* ଟ୍ରଷ୍ଟ, ସିଣ୍ଡିକେଟ୍, ସଂଘ । ଏହି ସଂଘମାନ ଗଢି ବଡ଼ ବଡ଼ ପୁଞ୍ଜିପତିମାନେ ବଜାରର ଦର ନିୟନ୍ତ୍ରିତ କରନ୍ତି । ସେମାନେ ଯେଉଁ ଦର ଠିକ୍ କରନ୍ତି, ସେହି ଦୋକାନହିଁ ବଜାରରେ ମୂଲ୍ୟ ହୁଏ । ଆହୁରି ମଧ୍ୟ ଏପରି ସଂଘବଦ୍ଧ ହେବାରୁ ସଂଘ ବାହାରେ ଥିବା ପ୍ରତିଦ୍ୱନ୍ଦୀ ପୁଞ୍ଜିପତିଙ୍କ ବିରୁଦ୍ଧରେ ଲଢ଼େଇ କରନ୍ତି ଓ ସାନ ସାନ ବ୍ୟବସାୟୀମାନଙ୍କୁ ଅକ୍ଳେଶରେ କବଳିତ କରନ୍ତି ବା ଭୟ ଦେଖାଇ ଦବାଇ ଦିଅନ୍ତି ।

ଏହାକୁହିଁ ଏକଚାଟିଆ କାରବାର କୁହାଯାଏ । ଏହାର ଅର୍ଥ ହେଉଛି-ଏହି ବଡ଼ ବଡ଼ ପୁଞ୍ଜିପତିଙ୍କ ସଂଘ ବଜାରର ସବୁ ଶିଳ୍ପଜାତ ଦ୍ରବ୍ୟ ଓ ଅନ୍ୟାନ୍ୟ ଜିନିଷଗୁଡ଼ିକ ନିଜର ଇଚ୍ଛାନୁସାରେ ଦର ଠିକ୍ କରି ସୁବିଧା ମୁତାବକ ବିକାକିଣା କରନ୍ତି ଓ ଲାଭ ଉଠାନ୍ତି । ଏକଚାଟିଆ କାରବାର ଦ୍ୱାରା କିପରି ଭାବରେ ପୁଞ୍ଜିପତି ସଂଘମାନ ନିଜର ବ୍ୟବସାୟ ଓ ପୁଞ୍ଜି ବଢ଼ାନ୍ତି ଏବଂ ତାହାଦ୍ୱାରା ଦରିଦ୍ର ଜନସାଧାରଣ କିପରି କଷ୍ଟ ପାଆନ୍ତି ତାହା ଭିନ୍ନ ଭିନ୍ନ ଦେଶର ବଣିକ-ସଂଘମାନଙ୍କର କାର୍ଯ୍ୟକଳାପ ଓ ଗଠନ ପ୍ରଭୃତି ଦେଖିଲେ ଜଣାପଡ଼େ । ଆମେରିକାର ମର୍ଗାନ ( କୋଟିପତି )ଙ୍କର ଇସ୍ପାତ୍ ସଂଘର ପୁଞ୍ଜି ଓ କାର୍ଯ୍ୟ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏହି ଇସ୍ପାତ ସଂଘର ୧୪୭ଟା ମିଲ୍ ବା ଫ୍ୟାକ୍ଟେରୀ ଅଛି ଏବଂ ୭୦୦୦୦ ମାଇଲ ବ୍ୟାପୀ ରେଲ୍ ଏହା ହାତରେ ଅଛି ।

---

* ଟ୍ରଷ୍ଟ—ଆମେରିକା ବଣିକ ସଂଘ ।
ସିଣ୍ଡିକେଟ—ଜର୍ମାନୀର ବଣିକ ସଂଘ ।
ସଂଘ—ଭାରତୀୟ ବଣିକ ସଂଘ, ଓଡ଼ିଶା ବଣିକ ସଂଘ, ଇତ୍ୟାଦି ।

ଏହି ସଂଘମାନେହିଁ ପୃଥିବୀର ଭାଗ୍ୟବିଧାତା ହୋଇଛନ୍ତି । ପୃଥିବୀରେ ଋଷିଆକୁ ଛାଡ଼ି ଯେତେ ତେଲ ଯୋଗାହୁଏ ତାର ଅଧେ ଯୋଗାନ୍ତି କେବଳ ଅମେରିକାର ୨ଟି ପୁଞ୍ଜିପତି ସଂଘ । ଏହାପରି ଅମେରିକାର ଏହି ସଂଘଗୁଡ଼ିକ କାଚ, କାଗଜ, ଖାଦ୍ୟଜିନିଷ ଓ ରସାୟନିକ ଦ୍ରବ୍ୟଗୁଡ଼ିକ ଯୋଗାଇବା ପାଇଁ ପ୍ରାୟ ଏକଚାଟିଆ କରିଅଛନ୍ତି ।

ଏକଚାଟିଆ କାରବାର ହେବା ଦ୍ୱାରା ପୁରୁଣା ପୁଞ୍ଜିବାଦୀ ପ୍ରଥାର ପୁରୁଣାକାଳିଆ ମୁକ୍ତ ପ୍ରତିଦ୍ୱନ୍ଦିତା ଉଠିଗଲାଣି । ଅର୍ଥାତ୍ ଏପରି ସଂଘ ହେବା ପୂର୍ବରୁ ଆଗେ ପୁଞ୍ଜିବାଦୀମାନେ ବ୍ୟକ୍ତିଗତ ଭାବରେ ନିଜ ନିଜ ଭିତରେ ବଜାର ଦଖଲ କରିବା ସକାଶେ କଳହ କରୁଥିଲେ । କିନ୍ତୁ ଏହିସବୁ ଧନିକ ସଂଘ, ବଣିକ ସଂଘ ହେବା ପରେ ସେସବୁ ଆଉ ରହିଲା ନାହିଁ । ତାହାହେଲେ ଆମ୍ଭେମାନେ କଣ ବୁଝିବା ଯେ, ଏକଚାଟିଆ ସଂଘସବୁ ହେଲାପରେ ପ୍ରତିଦ୍ୱନ୍ଦିତା କମିଯାଉଛି ବା ଲୋପ ପାଇଯାଉଛି ? ନା, ତା ନୁହେଁ । ବରଂ ଏହାଦ୍ୱାରା ପ୍ରତିଦ୍ୱନ୍ଦିତା ଯୁଦ୍ଧ ଆହୁରି ବେଶୀ ବଢ଼ି ଯାଉଛି । କିପରି ? ଭିନ୍ନ ଭିନ୍ନ ଶିଳ୍ପମାନଙ୍କର ଭିନ୍ନ ଭିନ୍ନ ପୁଞ୍ଜିବାଦୀ ସଂଘ ଗଢ଼ାଯାଉଛି । ଗୋଟାଏ ଦେଶର ଏହି ସଂଘସବୁ ଅନ୍ୟଦେଶର ସେହିପରି ସଂଘମାନଙ୍କ ବିରୁଦ୍ଧରେ ଭୀଷଣ ପ୍ରତିଦ୍ୱନ୍ଦିତା ଯୁଦ୍ଧ ଚଳାଇଛନ୍ତି । ଆଗେ ବ୍ୟକ୍ତିଗତ ପୁଞ୍ଜିବାଦୀଙ୍କ ଭିତରେ ଯେଉଁ ପ୍ରତିଦ୍ୱନ୍ଦିତା ଚାଲିଥିଲା ତାହା ଏବେ ଦଳବଦ୍ଧ ଭାବରେ ଚାଲିଛି । ସେମାନଙ୍କ ମଧ୍ୟରେ ବଜାର ପାଇଁ, କଞ୍ଚାମାଲ ପାଇଁ ଓ ଶସ୍ତା ମଜୁରି ପାଇବା ପାଇଁ ଏବଂ ଖଣ୍ଡେ ଜମି ପାଇଁ ମଧ୍ୟ ଭୀଷଣ ପ୍ରତିଦ୍ୱନ୍ଦିତା ଚାଲେ । ଅନ୍ୟ କଥାରେ କହିବାକୁ ଗଲେ ପୃଥିବୀର ଅନ୍ୟାନ୍ୟ ବଜାରକୁ କିଏ କରଗତ କରି ତାର ବ୍ୟବସାୟ ଚଳାଇ

ପାରେ, ସେଥିପାଇଁ ଏ ପ୍ରତିଦ୍ୱନ୍ଦ୍ୱିତା ଅତି ଉତ୍କଟ ଆକାର ଧାରଣ କରେ । ଫଳରେ ଏପରି ହୁଏ ଯେ, ବିଭିନ୍ନ ଦେଶର ପୁଞ୍ଜିବାଦୀ ସଂଘମାନ ନିଜ ନିଜ ଦେଶରେ ସେମାନଙ୍କର କର୍ତ୍ତୃତ୍ୱ ସ୍ଥାପନ କରି ନିଜର ସ୍ୱାର୍ଥସିଦ୍ଧିରେ ଲାଗି ପଡ଼ନ୍ତି । ଅର୍ଥାତ୍ ବଜାର ବା ସାମ୍ରାଜ୍ୟ ବିସ୍ତାର କରିବା ପାଇଁ ଚେଷ୍ଟା କରନ୍ତି । ଏଣୁ ଏକ-ଚାଟିଆ ପୁଞ୍ଜିବାଦ ସାମ୍ରାଜ୍ୟବାଦର ପ୍ରଧାନ ବୈଶିଷ୍ଟ୍ୟ । କେବଳ ସେତିକି ନୁହେଁ, ଏହି ବିଭିନ୍ନ ଏକଚାଟିଆ ସଂଘଗୁଡ଼ିକର କର୍ତ୍ତୃତ୍ୱ ନେବା ପାଇଁ ଓ ତଦ୍ୱାରା ନିଜର ସ୍ୱାର୍ଥ ବଜାୟ ରଖିବା ଉଦ୍ଦେଶ୍ୟରେ ସଫଳ ହେବା ପାଇଁ ଏମାନଙ୍କ ଭିତରୁ ବଡ଼ ବଡ଼ ପୁଞ୍ଜିବାଦୀମାନେ ବେଶୀ ବେଶୀ ସେୟାର ( Share ) କିଣି ପକାନ୍ତି । ଯାହା ଦ୍ୱାରା କି ସେମାନେ ନିଜ ନିଜ ହାତ ମୁଠାରେ ଏହି ସଂଘଗୁଡ଼ିକୁ ରଖି ପାରିବେ ( ଅମର ଲତା ସିଣ୍ଡିକେଟ ଏହାର ନମୁନା ) ଏହା ହେବା ଦ୍ୱାରା ନିଜ ସଂଘ ଭିତରେ ଓ ସଂଘ ବାହାରେ ଥିବା ପୁଞ୍ଜିପତିମାନଙ୍କର ଉତ୍ପାଦନ ପ୍ରଣାଳୀରେ ଯେଉଁ ସଂଘର୍ଷ ଆସେ ଓ ଉତ୍ପାଦନରେ ଯେଉଁ ଅରାଜକତା ପହଞ୍ଚେ ତାହା ଅତି ଭୀଷଣ ଆକାର ଧାରଣ କରେ ଏବଂ ପୁଞ୍ଜିବାଦର ବିରୋଧ ବେଶୀ ବେଶୀ ଉତ୍କଟ ହୋଇପଡ଼େ ।

ଲେନିନ୍ ସାମ୍ରାଜ୍ୟବାଦକୁ ଏକଚାଟିଆ-ପୁଞ୍ଜିବାଦ ବୋଲି ଆଖ୍ୟା ଦେଇଛନ୍ତି । ପୁଞ୍ଜିବାଦ ଯେତେବେଳେ ଶେଷ ସ୍ତରରେ ପହଞ୍ଚେ ସେତେବେଳେ ଏକଚାଟିଆ କାରବାରହିଁ ତାର ଚରମ ବିକାଶ । ଲେନିନ୍ ତାଙ୍କର 'ସାମ୍ରାଜ୍ୟବାଦ' ନାମକ ବହିରେ ଲେଖିଛନ୍ତି ।

"ସାମ୍ରାଜ୍ୟବାଦର ସଂଜ୍ଞା ଖୁବ ସଂକ୍ଷେପରେ ଦେବାକୁ ହେଲେ, ଆମ୍ଭମାନଙ୍କୁ କହିବାକୁ ହେବ ଯେ, ସାମ୍ରାଜ୍ୟବାଦ ପୁଞ୍ଜିବାଦର ଏକଚାଟିଆ ଅବସ୍ଥା" ।

ସେ ପୁଣି କହୁଛନ୍ତି—"ସାମ୍ରାଜ୍ୟବାଦ (ବା ଅର୍ଥ ପୁଞ୍ଜିର ଯୁଗ) କୁ ଅର୍ଥନୀତି ଦୃଷ୍ଟିରୁ ଦେଖିବାକୁ ଗଲେ ଦେଖାଯିବ ଯେ, ତାହା ପୁଞ୍ଜିବାଦ ବିକାଶର ଶେଷ ସ୍ତର—ଅର୍ଥାତ୍ ସେତେବେଳେ ଉତ୍ପାଦନ ଏତେ ବେଶି ଭାବରେ ହୁଏ ଯେ, ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ବଦଳରେ ଏକଚାଟିଆ କାରବାର ସୃଷ୍ଟି ହୁଏ । ଏହାହିଁ ହେଉଛି ସାମ୍ରାଜ୍ୟବାଦର ଅର୍ଥନୀତିକ ମୂଳ ତତ୍ତ୍ୱ । ଏକଚାଟିଆ ଟ୍ରଷ୍ଟ, ସିଣ୍ଡିକେଟ ବା ସଂଘ ପ୍ରଭୃତି ପ୍ରକାଣ୍ଡ ବ୍ୟାଙ୍କମାନଙ୍କର ସୃଷ୍ଟିଅଡ଼େ କାରବାର, ଆମେରିକାର ମରଗାନ ବ୍ୟାଙ୍କ ଇଂଲଣ୍ଡର ବ୍ୟାଙ୍କ ଅଫ୍ ଇଂଲଣ୍ଡ ପ୍ରଭୃତି । ବ୍ୟାଙ୍କ ପୁଞ୍ଜିର କେନ୍ଦ୍ରୀକରଣ ପ୍ରଭୃତି କରିଥିବାରେ ଏକଚାଟିଆ କାରବାର ପ୍ରକାଶ ପାଏ । ଅର୍ଥନୀତିକ ଏକଚାଟିଆ ମୂଳରେହିଁ ସବୁ ଅଛି ।"

ସାମ୍ରାଜ୍ୟବାଦ ଯୁଗରେ ବ୍ୟାଙ୍କଗୁଡ଼ିକ ଯେଉଁ ନୂଆ ରୂପ ନିଅନ୍ତି ତଦ୍ୱାରା ଏକଚାଟିଆ ସଂଘମାନଙ୍କର ଶକ୍ତି ଓ ତାପର୍ଯ୍ୟ ବଢ଼ିଯାଏ । ତେଣୁ ବ୍ୟାଙ୍କ ଗୁଡ଼ିକର ଉଦ୍ଭବ ଓ ବିକାଶ ସଙ୍ଗେ ସଙ୍ଗେ ସେମାନଙ୍କର ତାପର୍ଯ୍ୟ ବୁଝିବାକୁ ହେବ ।

## ଅର୍ଥ ପୁଞ୍ଜି

ଆଜିକାଲି ଆମ୍ଭେମାନେ ଯେଉଁ ବ୍ୟାଙ୍କସବୁ ଦେଖୁଅଛୁ ସେସବୁର ଉତ୍ପତ୍ତି ହେଲା କିପରି ? ପୁଞ୍ଜିବାଦୀ ଅନୁଷ୍ଠାନ ତାଙ୍କ ଟଙ୍କା ପଇସା କାରବାରରେ ବହୁତ ଅସୁବିଧା ଭୋଗ କଲେ । ସବୁ ସମୟରେ ସେମାନେ ନଗଦ ଟଙ୍କା ଦେଇ ପାରନ୍ତି ନାହିଁ ବା ଦେବାର ଅସୁବିଧା ହୁଏ । କାରଣ ହଜାର ହଜାର ଟଙ୍କା ଅନ୍ୟ କୌଣସି ବ୍ୟବସାୟୀଙ୍କୁ ଦେବାକୁ ହେଲେ ସଙ୍ଗେ ସଙ୍ଗେ ତାଙ୍କ

ମାନଙ୍କ ପାଖରେ ଟଙ୍କା ମହଜୁତ୍ ନ ଥାଏ ବୋଲି ସେମାନେ ଦେଇ ପାରନ୍ତି ନାହିଁ; ତେଣୁ ବ୍ୟବସାୟରେ ଅସୁବିଧା ଘଟେ । କିନ୍ତୁ ଟଙ୍କା ଦେବାକୁ ହେବ । ତାହାହେଲେ କୌଣସିଠାରୁ ଟଙ୍କା କରଜ କରିବାକୁ ପଡ଼ିବ । ବ୍ୟାଙ୍କ ହେଉଛି ପ୍ରକୃତ ସ୍ଥାନ ଯେଉଁଠାରୁ ସେମାନେ କରଜ କରି ପାରିବେ ଏବଂ ସେହି ବ୍ୟାଙ୍କହିଁ ହେଉଛି ପ୍ରକୃତ ସ୍ଥାନ ଯେଉଁଠାରେ ଟଙ୍କା ଜମା ଦେଇ ପାରିବେ ଓ ସୁଧ ପାଇ ପାରିବେ । ଏଣୁ ପୁଞ୍ଜିବାଦୀ ଉଭୟ ପ୍ରକାରେ ଏ ବ୍ୟାଙ୍କଦ୍ୱାରା ଉପକୃତ ହୁଏ । ସେ ତାର ଅଭାବ ହେଲେ ବ୍ୟାଙ୍କରୁ ଟଙ୍କା କରଜ ନେଇ ପାରିବ ଓ ଟଙ୍କା ବେଶୀ ହେଲେ ବ୍ୟାଙ୍କରେ ଜମା ଦେଇ ପାରିବ । ପୁଞ୍ଜିବାଦୀର ଯେତେବେଳେ ଟଙ୍କା ଅଭାବ ପଡ଼େ, ସେ ବ୍ୟାଙ୍କରୁ ଟଙ୍କା ଆଣେ ଏବଂ ଯେତେବେଳେ କାରବାରରୁ ହଜାର ହଜାର ଟଙ୍କା ଆସି ହାତରେ ପଡ଼େ ସେ ବ୍ୟାଙ୍କରେ ନେଇ ଜମା କରେ । ଅନେକ ସମୟରେ ପୁଞ୍ଜିବାଦୀର କାରବାର ନ ଥାଏ ବା କାରବାର ହେବାପାଇଁ ଡେରିଥାଏ ବା ମାଲ୍ ଆସିବାରେ ଡେରିଥାଏ, ତେଣୁ ତା ହାତରେ ଟଙ୍କା ହେଲାକ୍ଷଣି ସେ ବ୍ୟାଙ୍କରେ ନେଇ ଜମା କରିଦିଏ, ସୁଧ ପାଇବ ବୋଲି । ଟଙ୍କାଟା ଖାଲି ହାତରେ ପଡ଼ି ରହିବ ନାହିଁକି; ବ୍ୟାଙ୍କରେ ଜମା କରିଦେଲେ କିଛି ଲାଭ ମିଳିଯିବ । ଟଙ୍କାକୁ ଖାଲି ପକାଇ ରଖିବା ପୁଂଜିବାଦୀର କାମ ନୁହେଁ । ଏପରି ଜମା କରିବାଦ୍ୱାରା ପୁଂଜିବାଦୀର ଯେପରି ଲାଭ ହୁଏ, ବ୍ୟାଙ୍କର ମଧ୍ୟ ସେପରି ଲାଭ ହୁଏ । ବ୍ୟାଙ୍କ ଟଙ୍କା କମ ସୁଧରେ ନିଏ ଓ ବେଶୀ ସୁଧରେ ବାଭିଲ ପୁଂଜିବାଦୀଙ୍କୁ ଦାଦନ ଦିଏ । ଯେତେବେଳେ ଗୋଟିଏ ପୁଂଜିବାଦୀର ଟଙ୍କା ବେଶୀ ହୁଏ, ଅନ୍ୟ ପୁଂଜିବାଦୀର ହଠାତ୍ ସେତିକିବେଳେ ଟଙ୍କା ଦରକାର ପଡ଼େ ଏବଂ ବ୍ୟାଙ୍କ ତାକୁ ଟଙ୍କା କରଜ ଦିଏ ।

ବ୍ୟାଙ୍କର ଏଇ ହେଉଛି ଲାଭ । ବ୍ୟାଙ୍କରେ ଯେ, କେବଳ ପୁଂଜିବାଦୀମାନେ ଟଙ୍କା ଜମା କରନ୍ତି ତାହା ନୁହେଁ । ଓକିଲ, ବ୍ୟବସାୟୀ, କୃଷୀ, ଶିକ୍ଷକ, ମଜଦୁର ସମସ୍ତେ ଏଥିରେ ଟଙ୍କା ଜମା-କରନ୍ତି ଓ ବ୍ୟାଙ୍କ ସେ ଟଙ୍କା ପୁଂଜିବାଦୀଙ୍କ ବ୍ୟବସାୟ ପାଇଁ ସେମାନଙ୍କ ପାଖରେ ନେଇ ହାଜୁଡ଼ାଏ । ବ୍ୟାଙ୍କରେ ଯେତିକି ଟଙ୍କା ବା ପୁଂଜି ହେବ, ସେତିକି ତାହାର କାର୍ଯ୍ୟକ୍ଷେତ୍ରପରିସର ବଢ଼ିବ । କିନ୍ତୁ ବ୍ୟାଙ୍କ ଯେତେବେଳେ ତାହାକୁ ଟଙ୍କା କରଜ ଦିଏ ତାର ସେ ଟଙ୍କା ଫେରି ପାଇବାର ବାଟ ରଖିଥାଏ । ଅର୍ଥାତ୍ ଯେ ଟଙ୍କା କରଜ ନେବ ତାର ସେହିପରି ଭାବରେ ଜମିବାଡ଼ି ଥିବା ଦରକାର । ଯେଉଁ ପୁଂଜିବାଦୀ ଅନୁଷ୍ଠାନ ବା ଫାର୍ମ ଟଙ୍କା ନିଏ ତାର ସମ୍ପତ୍ତିରେ ବା ତାର ବ୍ୟବସାୟରେ ବ୍ୟାଙ୍କର ହାତ ରହେ ଏବଂ ବ୍ୟାଙ୍କ ସେହି ବ୍ୟବସାୟର କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିବାକୁ ଅଳ୍ପେ ଅଳ୍ପେ ଚେଷ୍ଟା କରେ ।

ଯଦି ଫାର୍ମ ବା ପୁଂଜିବାଦୀ ଅନୁଷ୍ଠାନଟି ଗୋଟିଏ ଲିମିଟେଡ୍ କମ୍ପାନୀ (Limited Company) ହୋଇଥାଏ ତେବେ ବ୍ୟାଙ୍କ ଏହାର ସେୟାର ବା ଅଂଶ କିଣି ଏହି କମ୍ପାନୀର ବୋର୍ଡ଼ରେ ନିଜର ପ୍ରତିନିଧି ରଖି, ଏହାର ବ୍ୟବସାୟ ନିୟନ୍ତ୍ରଣ କରିବାପାଇଁ ଚେଷ୍ଟାକରେ । ଅନ୍ୟ ଦିଗରେ ଯେଉଁ ଫାର୍ମ ବା ପୁଂଜିବାଦୀ ଅନୁଷ୍ଠାନଗୁଡ଼ିକ ବ୍ୟାଙ୍କର ଗରାଖ ଥାଆନ୍ତି ବା ବ୍ୟାଙ୍କ ସଙ୍ଗେ ସେମାନଙ୍କର କାରବାର ଥାଏ, ସେମାନେ ବ୍ୟାଙ୍କର ଅବସ୍ଥା ପ୍ରତି ସଜାଗ ରହନ୍ତି । କାରଣ— ଯଦି ବ୍ୟାଙ୍କର ଅବସ୍ଥା ଖରାପ ହୋଇଯାଏ ବା ବ୍ୟାଙ୍କ ଫେଲ ମାରିଯାଏ, ତାହେଲେ ବିଭିନ୍ନ ପୁଂଜିବାଦୀମାନେ ସେହି ବ୍ୟାଙ୍କରେ ଯେଉଁ ପୁଂଜି ଖଟାଇଥାନ୍ତି ତାହା ଲୋପ ପାଇବ ଓ

ସେମାନଙ୍କର ବ୍ୟବସାୟ ଦେଉଳିଆ ହୋଇଯିବ । ତେଣୁ ଶିଳ୍ପ ଅନୁଷ୍ଠାନ ମଧ୍ୟ ବ୍ୟାଙ୍କର ସୁପରିଚାଳନାରେ ହସ୍ତକ୍ଷେପ କରନ୍ତି ଏବଂ ନିଜର ସ୍ୱାର୍ଥ ଅନୁଯାୟୀ ପ୍ରଭାବିତ କରନ୍ତି । ସେମାନେ ମଧ୍ୟ ବ୍ୟାଙ୍କର ପରିଚାଳନା ବୋର୍ଡରେ ନିଜ ଲୋକ ରଖନ୍ତି । କାରଣ---ସେମାନଙ୍କର ଟଙ୍କାର ଦରକାରବେଳେ ସେମାନେ ସୁବିଧାରେ ଟଙ୍କା ପାଇପାରିବେ ।

ବ୍ୟାଙ୍କମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ବଢ଼େ । ଏହା ବର୍ଦ୍ଧିବାଦ୍ୱାରା ଶକ୍ତିଶାଳୀ ବଡ଼ ବଡ଼ ବ୍ୟାଙ୍କ ଗଢ଼ିଉଠେ । ଶିଳ୍ପ ଉତ୍ପାଦନରେ ଓ ପୁଂଜିବାଦୀମାନଙ୍କ ଭିତରେ ଯେପରି ପ୍ରତିଦ୍ୱନ୍ଦ୍ୱିତା ହୁଏ ଏମାନଙ୍କ ମଧ୍ୟରେ ମଧ୍ୟ ସେହିପରି ହୁଏ । ଏହି ବଡ଼ ବଡ଼ ବ୍ୟାଙ୍କମାନ କ୍ଷମତାଶାଳୀ ଏକଚାଟିଆ ବ୍ୟବସାୟୀ ପାଲଟି ଯାଆନ୍ତି । ସେମାନଙ୍କ ପାଖରେ ବ୍ୟବସାୟୀ; ବଡ଼ ଓ ଶ୍ରେଷ୍ଠ ପୁଂଜିବାଦୀମାନଙ୍କର ଟଙ୍କା ମହଜୁତ୍ ଥାଏ । ତେଣୁ ସେମାନେ ପୁଂଜିପତିଙ୍କର ବ୍ୟବସାୟ ନିୟନ୍ତ୍ରଣ କରିବାରେ ପ୍ରଭାବ ପକାନ୍ତି । ଏପରିକି ସେମାନେ ସାରା ଦେଶର ଶିଳ୍ପ ବ୍ୟବସାୟ ଓ ଅର୍ଥନୀତିକୁ ନିୟନ୍ତ୍ରଣ କରନ୍ତି । ଖାଲି ସେତିକି ନୁହେଁ, ଅନ୍ୟ ଦେଶର ଶିଳ୍ପ ବ୍ୟବସାୟମାନ ଓ ଅର୍ଥନୀତି ମଧ୍ୟ ସେମାନେ ନିୟନ୍ତ୍ରଣ କରନ୍ତି । ପୁଂଜିବାଦୀମାନଙ୍କର ଏହି ଶ୍ରେଷ୍ଠ ଦଳଟି ଏଠାବେଳକେ ବ୍ୟାଙ୍କ, ଶିଳ୍ପାନୁଷ୍ଠାନ ଓ ମାଲ୍ ସରବରାହ କରିବାର ସରଞ୍ଜାମର ମାଲିକ ହୋଇଥିବାରୁ ସେମାନେ ଦେଶ-ବିଦେଶର ବ୍ୟବସାୟ ଓ ଅର୍ଥନୀତି ନିଜ ଇଚ୍ଛା ଅନୁସାରେ ନିୟନ୍ତ୍ରଣ କରିବାପାଇଁ ସକ୍ଷମ ହୁଅନ୍ତି । ଏହିପରି ଭାବରେ ଅର୍ଥପୁଂଜିର ଜନ୍ମ । ଲେନିନ୍‌ଙ୍କ ଭାଷାରେ---"ଉତ୍ପାଦନ କେନ୍ଦ୍ରୀଭୂତ ହେବା-ଦ୍ୱାରା ଏକଚାଟିଆ କାରବାର ଆରମ୍ଭ ହୁଏ ଓ ଶିଳ୍ପସହିତ ବ୍ୟାଙ୍କ

ଦେଖିଥାଏ । ଏହାହିଁ ହେଲା ଅର୍ଥପୁଂଜର କାରଣ” । ସାମ୍ରାଜ୍ୟବାଦ ତେଣୁ ଅର୍ଥପୁଂଜ ଶାସନର ଯୁଗ ।

## ପୃଥିବୀକୁ ଭାଗ ଭାଗ କରିବା ପାଇଁ କଳହ

ଅର୍ଥପୁଞ୍ଜି ବଢ଼ିବା ଦ୍ୱାରା ନୂଆ ନୂଆ ବଜାର ଓ କଞ୍ଚାମାଲ ପାଇବା ଓ ସେଥିହେତୁ ସ୍ଥାନ ଦଖଲ କରିବାର ଅବଶ୍ୟକ ହେଲା । ଊନବିଂଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ବିଭିନ୍ନ ଦେଶର ପୁଞ୍ଜିବାଦୀମାନଙ୍କ ଭିତରେ ସଂଘର୍ଷ ଆସି ନ ଥିଲା । କାରଣ ସେମାନେ ଅନ୍ୟଦେଶମାନଙ୍କୁ ସେମାନଙ୍କର ଶିଳ୍ପଜାତ ଦ୍ରବ୍ୟସବୁ ବିନାବାଧାରେ ରପ୍ତାନି କରି ପାରୁଥିଲେ । କିନ୍ତୁ ଏ ଅବସ୍ଥା ବେଶୀ ଦିନ ରହିଲା ନାହିଁ । ଅନ୍ୟାନ୍ୟ ଦେଶମାନଙ୍କ ଅପେକ୍ଷା ଇଂଲଣ୍ଡ ଶିଳ୍ପ-ପୁଞ୍ଜିରେ ପ୍ରାଧାନ୍ୟ ଲାଭ କରି ପାରିଥିଲା । ଏବଂ ସେଥି ହେତୁ ତାର ଦ୍ରବ୍ୟସବୁ ବିକ୍ରି କଞ୍ଚାମାଲ ପାଇବାର ଆବଶ୍ୟକତା ସେ ବେଶୀ ଉପଲବ୍ଧି କଲା । ନାନାପ୍ରକାର ଲୁଗା ଓ ଲୌହଜାତ ଦ୍ରବ୍ୟସବୁ ତିଆରି କରି ପୃଥିବୀର ଚାରିଆଡ଼େ ବିକିବାକୁ ଆରମ୍ଭ କଲା । ସେ ଏସିଆ, ଅଫ୍ରିକା ଓ ଆମେରିକାରେ ବିନା ବାଧାରେ ବ୍ୟବସାୟ ଚଳାଇଲା । ଅନ୍ୟାନ୍ୟ ଦେଶରେ ପୁଞ୍ଜିବାଦ ବଢ଼ିବା ସଙ୍ଗେ ସଙ୍ଗେ ସେମାନେ ଅନୁନ୍ନତ ଦେଶସବୁ ଦଖଲ କରିବାରୁ ଇଂଲଣ୍ଡର ବ୍ୟବସାୟରେ ବାଧା ଆସିଲା । ଜର୍ମାନୀ ଓ ଫ୍ରାନ୍ସ ପୃଥିବୀର ବଜାରରେ ପ୍ରତିଦ୍ୱନ୍ଦୀ ହୋଇ ବାହାରିଲେ । ତେଣୁ ଇଂଲଣ୍ଡ ପୃଥିବୀର ବଜାରକୁ ଏକଚାଟିଆ କରିବାର ସୁବିଧାରୁ ଅନେକ ପରିମାଣରେ ବଞ୍ଚିତ ହେଲା । ଏହି ଦେଶମାନ ସେମାନଙ୍କର ବଳକା ପୁଞ୍ଜି ତାଙ୍କର ପୂର୍ବ୍ବ ବା ଅର୍ଦ୍ଧ ଅଧିକୃତ ଉପନିବେଶମାନଙ୍କରେ ଖଟାଇ ଥିଲେ ।

ସେହି ସେହି ଉପନିବେଶମାନଙ୍କରେ ଶିଳ୍ପାନୁଷ୍ଠାନ ଓ ରେଲ୍ ପ୍ରଭୃତି ତିଆରି କରାଇଥିଲେ । ତେଣୁ ଅର୍ଥପୁଞ୍ଜିର ଉନ୍ନତି ସଙ୍ଗେ ସଙ୍ଗେ ପୁଞ୍ଜି ଖୁବ୍ ବେଶୀ ମାତ୍ରାରେ ଉପନିବେଶମାନଙ୍କୁ ରପ୍ତାନି ହେବାକୁ ଲାଗିଲା । ଜେନେରାଲ୍ ଷ୍ଟାଲିନ୍ ଏ ବିଷୟରେ କହିଛନ୍ତି ଯେ,—"ଏହି ସାମ୍ରାଜ୍ୟବାଦୀ ଯୁଗରେ ଅର୍ଥପୁଞ୍ଜିର ପ୍ରାଧାନ୍ୟ ବହୁତ ବେଶୀ । ଏହି ଯେଉଁ ସବୁ ପୁଞ୍ଜି ଉପନିବେଶମାନଙ୍କୁ ରପ୍ତାନି ହୁଏ, ସେ ସବୁ ବ୍ୟବସାୟ ଓ ଅତ୍ୟଧିକ ସୁଧରେ ଲଗାଇ ଦେବାରେ ଲାଗେ । ଏହାଦ୍ୱାରା ସାମ୍ରାଜ୍ୟବାଦର ଅତ୍ୟାଚାରୀ କବଳକୁ ଶକ୍ତ କରାହୁଏ । ଅଧିକନ୍ତୁ ମଧ୍ୟ ଉପନିବେଶ-ମାନଙ୍କରେ ଥିବା ସ୍ଥାନୀୟ ବୁର୍ଜୁଆମାନଙ୍କର ତଥାକଥିତ ସ୍ୱାଧୀନ ସଂସ୍ଥା ବା ଅନୁଷ୍ଠାନମାନଙ୍କ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ହାସଲ ହୁଏ" ।

"ଉପନିବେଶମାନଙ୍କୁ ପୁଞ୍ଜି ରପ୍ତାନି କରିବା ଦ୍ୱାରା ସେଠାରେ ପୁଞ୍ଜିବାଦ ସ୍ଥାପନ କରି ହୋଇ ପୁଞ୍ଜିବାଦୀ ସମ୍ପର୍କ ଦୃଢ଼ୀଭୂତ କରାହୁଏ । ଉପନିବେଶମାନଙ୍କୁ ରପ୍ତାନି ହେଉଥିବା ପୁଞ୍ଜି ମଧ୍ୟରୁ କେତେକାଂଶ ଯେ ଶିଳ୍ପାନୁଷ୍ଠାନମାନଙ୍କର ଉନ୍ନତି ପାଇଁ ନ ଲାଗେ ତାହା ନୁହେଁ; କିନ୍ତୁ ଏହି ଶିଳ୍ପ ଉନ୍ନତି ଯେପରି ସବୁବେଳେ ସାମ୍ରାଜ୍ୟବାଦୀ ଦେଶର ଅଧୀନ ହୋଇ ରହିବ, ସେପରିଭାବରେ ଏହା କରାଯାଏ; ଉପନିବେଶମାନଙ୍କର ଅର୍ଥନୈତିକ ସ୍ୱାଧୀନତା ପାଇଁ କଦାପି ନୁହେଁ । ସାଧାରଣତଃ ବିଦେଶରୁ ଆମଦାନି ପୁଞ୍ଜି ଉପନିବେଶମାନଙ୍କରେ କେବଳ କଞ୍ଚାମାଲ୍ କମ୍‌ରେ ଭଲ ଭାବରେ ଯୋଗାଯାଇ ପାରିବ ଓ ସେଗୁଡ଼ିକୁ ବ୍ୟବହାରଯୋଗ୍ୟ ଅବସ୍ଥାକୁ ଅଣାଯାଇ ପାରିବ ସେହି କାର୍ଯ୍ୟରେ ଲାଗେ । ଏହି ରପ୍ତାନି ପୁଞ୍ଜି ମାଲ୍

ସରବରାହ ପାଇଁ ଯାତାୟାତ ସୁବିଧା ସକାଶେ ରେଲ୍, ଜାହାଜ ଓ ବନ୍ଦର ତିଆରି କରେ । କାରଣ ଏହାଦ୍ୱାରା କଞ୍ଚାମାଲ ସରବରାହରେ ସୁବିଧା ହୁଏ ଓ ଉପନିବେଶ ସହିତ ସାମ୍ରାଜ୍ୟବାଦୀ ଦେଶର ସମ୍ବନ୍ଧ କ୍ରମେ ନିକଟତର ହୁଏ" ।

ଉପନିବେଶ ଓ ପୁଞ୍ଜିବାଦୀ ଦେଶ ଭିତରେ ଗୋଟିଏ ମୌଳିକ ବିଶେଷତ୍ୱ ହେଉଚ୍ଛି-ଉପନିବେଶମାନଙ୍କର ସମସ୍ତ ବ୍ୟବସାୟ ନିୟନ୍ତ୍ରଣ କରି ସେମାନଙ୍କର ଅର୍ଥନୀତିକୁ ପୁଞ୍ଜିବାଦୀମାନେ ହାତରେ ରଖନ୍ତି । ପୁଞ୍ଜିବାଦୀମାନେ ଅନୁନ୍ନତ ଦେଶମାନଙ୍କରେ ପୁଞ୍ଜି ଖଟାନ୍ତି । କାରଣ ସେଠାରେ ଲାଭ ବେଶୀ । କିପରି ? କମ ମଜୁରିରେ ଶ୍ରମିକ ମିଳନ୍ତି । ଜମି ଖୁବ୍ ଶସ୍ତାରେ ମିଳେ, କଞ୍ଚାମାଲ ଅତି ସୁବିଧାରେ ମିଳେ ଓ ସେହି ସେହି ଉପନିବେଶ ମାନଙ୍କରେ ପୁଞ୍ଜି ଖୁବ୍ କମ ଥାଏ । ଅର୍ଥାତ୍ ଉପନିବେଶଗୁଡିକ ଅନୁନ୍ନତ ହୋଇଥିବାରୁ, ମିଲ କଳକାରଖାନା ପ୍ରଭୃତି ନ ଥିବାରୁ ପୁଞ୍ଜିର ପ୍ରସାର ହୋଇ ନ ଥାଏ । ତେଣୁ ବିଦେଶୀ ପୁଞ୍ଜି ଏଠାରେ ଏକଚାଟିଆ ସୂତ୍ରରେ ବେଶୀ ଲାଭ ମାରେ । ବିଂଶ ଶତାବ୍ଦୀର ପ୍ରଥମ ଭାଗରୁ ପୁଞ୍ଜି ଉପନିବେଶମାନଙ୍କରେ ବେଶୀ ପରିମାଣରେ ଲାଗିଲା । ଫଳରେ ଯେଉଁ ଦେଶରୁ ପୁଞ୍ଜି ଆସି ଯେଉଁ ଅନୁନ୍ନତ ଉପନିବେଶମାନଙ୍କରେ ଲଗା ହେଲା ସେହି ଉପନିବେଶମାନ ସେହି ପୁଞ୍ଜିବାଦୀ ଦେଶମାନଙ୍କ ଅଧୀନରେ ରହିଲା । ଅନୁନ୍ନତ ଉପନିବେଶମାନଙ୍କରେ ପୁଞ୍ଜିବାଦୀ ଦେଶର ପୁଞ୍ଜି ଲାଗି ଥିବାରୁ ସେହି ଦେଶ ଏହି ଅନୁନ୍ନତ ଦେଶ-ମାନଙ୍କରେ ସେମାନଙ୍କ ପୁଞ୍ଜିକୁ ରକ୍ଷା କରିବା ପାଇଁ ସତତ ଜାଗ୍ରତ ରହିଲେ । ଏ ଉପନିବେଶମାନ ସେମାନଙ୍କ

ନେଉଟିଆ ପଡ଼ାଲ ହୋଇଥିବାରୁ ସେଗୁଡ଼ିକର ସୁରକ୍ଷା ନିମିତ୍ତ ମଧ୍ୟ ବନ୍ଦୋବସ୍ତ କଲେ ଓ ସୈନ୍ୟ ବାହିନୀ ଗଢ଼ାଗଲା । କେବଳ ସେତିକି ନୁହେଁ, ମାଲ ସରବରାହ ପାଇଁ ଯେଉଁ ସବୁ ବନ୍ଦର ହୋଇଥାଏ, ଯେଉଁ ସବୁ ଜାହାଜ ତିଆରି ହୋଇଥାଏ, ସେ ସବୁ ରକ୍ଷା କରିବା ପାଇଁ ଓ ଯାତାୟତର ସୁବିଧା ପାଇଁ ଯୁଦ୍ଧ ଜାହାଜ, ବୁଡ଼ାଜାହାଜ ପ୍ରଭୃତି ନୌବାହିନୀ ମଧ୍ୟ ଗଢାଯାଏ । ଏ ସବୁ ଦେଶମାନଙ୍କରେ ସୈନ୍ୟସାଜସଜ୍ଜା ମଧ୍ୟ ଜୋରସୋରରେ ଚାଲେ । କାରଣ ବିଭିନ୍ନ ପୁଂଜିବାଦୀ ଦେଶମାନଙ୍କ ମଧ୍ୟରେ ଉପରୋକ୍ତ ନେଉଟିଆ ପଡ଼ାଲ ପାଇଁ ମାରପିଟ ହେବାର, ଅନ୍ୟ ଭାଷାରେ ଯୁଦ୍ଧ ହେବାର ସମ୍ଭାବନା ମଧ୍ୟ ବଢ଼େ । ୧୯୧୪ ମସିହା ବେଳକୁ ପୃଥିବୀ ପୁଂଜିବାଦୀମାନଙ୍କ ଭିତରେ ଭାଗ ଭାଗ ହୋଇ ସାରିଥିଲା । ସେତେବେଳେ ପ୍ରଶ୍ନ ଉଠିଲା ପୃଥିବୀକୁ ପୁନର୍ବିଭାଗ କରିବାକୁ । ଏଥିପାଇଁ ସାମ୍ରାଜ୍ୟବାଦୀମାନଙ୍କ ଭିତରେ ଯୁଦ୍ଧ ହେଲା ।

୧୯୧୪ ମସିହାରେ ଲେନିନ୍ ଲେଖିଥିଲେ—"ପୁଂଜିବାଦୀ ଦେଶମାନଙ୍କ ଦ୍ୱାରା ଆମର ଏହି ପୃଥିବୀରେ ସମସ୍ତ ଅନଧିକୃତ ଦେଶ ଅଧିକାର କରା ହୋଇଛି । ପୃଥିବୀ ଭାଗ ଭାଗ ହୋଇ ସାରିଛି । ଭବିଷ୍ୟତରେ କେବଳ ପୁନର୍ବିଭାଗ ହେବାର କଥା । ଅର୍ଥାତ୍ ଗୋଟିଏ ମାଲିକ ଠାରୁ ଅନ୍ୟ ଗୋଟିଏ ମାଲିକ ହାତକୁ ଯିବା କଥା ।"

୧୯୧୪—୧୮ ପର୍ଯ୍ୟନ୍ତ ଯେଉଁ ମହାଯୁଦ୍ଧ ହେଲା, ତାହା ପୃଥିବୀକୁ କେବଳ ଭାଗ ବଣ୍ଟନ କରିବା ପାଇଁ ।

# ସାମ୍ରାଜ୍ୟବାଦର ଅବସାନ ଓ ପୁଞ୍ଜିବାଦର ଶେଷ ଅବସ୍ଥା

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପୁଂଜିବାଦ ଖୁବ୍ ବଢ଼ିବାକୁ ଲାଗିଲା । ଫଳରେ ଉତ୍ପାଦନ ଓ ପୁଞ୍ଜି କେନ୍ଦ୍ରୀଭୂତ ହେଲା ଓ ଶକ୍ତିଶାଳୀ ଏକଚାଟିଆ କାରବାର ସୃଷ୍ଟି ହେଲା । କେବଳ ସେତିକି ନୁହେଁ, ବ୍ୟାଙ୍କ ଓ ଶିଳ୍ପପୁଞ୍ଜି ଦୃଢୀଭୂତ ହେବା ସଙ୍ଗେ ସଙ୍ଗେ ଅର୍ଥପୁଂଜି ସୁଦୃଢ ହୋଇ କେତେ ଲୋକଙ୍କ ହାତରେ ରହିବାରୁ ସେମାନେ ଅର୍ଥନୀତି ନିୟନ୍ତ୍ରଣ କଲେ; ଅନ୍ୟାନ୍ୟ ଦେଶକୁ ପୁଂଜି ରପ୍ତାନୀ କଲେ, ଏହା ଫଳରେ ଏହି ବିଭିନ୍ନ ଦେଶର ପୁଂଜିପତିଙ୍କ ଭିତରେ ପୁଂଜି ନିୟନ୍ତ୍ରଣ କରିବା ଲାଗି ଯୁଦ୍ଧ ଆରମ୍ଭ ହେଲା । ପୁଂଜିବାଦର ଏହା ହେଉଛି ନୂତନ ଅବସ୍ଥା ବା ସାମ୍ରାଜ୍ୟବାଦୀ ଅବସ୍ଥାରେ ପୁଂଜିବାଦୀ ରୂପ ।

## ସାମ୍ରାଜ୍ୟବାଦ

ଲେନିନ୍ ଏହି ଅବସ୍ଥାକୁ ନିମ୍ନଲିଖିତ ଭାବରେ ବର୍ଣ୍ଣନା କରି ଅଛନ୍ତି—"ପୁଂଜିବାଦ ଯେତେବେଳେ ଉନ୍ନତ ହୋଇ ଏକଚାଟିଆ ଓ ଅର୍ଥପୁଂଜି ଅବସ୍ଥାକୁ ଆସେ, ପୁଂଜି ରପ୍ତାନୀ ହୋଇ ଉପନିବେଶମାନଙ୍କରେ ପ୍ରାଧାନ୍ୟ ବିସ୍ତାର କରେ, ଅନ୍ତର୍ଜାତିକ ବାଣିଜ୍ୟ ସଂଘମାନ ଯେତେବେଳେ ପୃଥିବୀକୁ ଭାଗ ଭାଗ କରିବାକୁ ଆରମ୍ଭ କରନ୍ତି ଓ ପୃଥିବୀର ବଡ଼ ବଡ଼ ପୁଂଜିବାଦୀ ଦେଶମାନଙ୍କ ଦ୍ୱାରା ଯେତେବେଳେ ସାରା ପୃଥିବୀ ଭାଗ ବଣ୍ଟା ହେବାକୁ ଆରମ୍ଭ କରେ, ସେହି ଅବସ୍ଥାକୁହିଁ ସାମ୍ରାଜ୍ୟବାଦ କୁହାଯିବ" ।

ଲେନିନ ସାମ୍ରାଜ୍ୟବାଦକୁ ପୁଞ୍ଜିବାଦର ଶେଷ ଅବସ୍ଥା ବୋଲି କାହିଁକି କହିଥିଲେ ? କାରଣ ସାମ୍ରାଜ୍ୟବାଦ ପୁଞ୍ଜିବାଦର ଅନ୍ତର୍ନିହିତ ସଂଘର୍ଷ ଗୁଡ଼ିକକୁ ଏପରି ଅବସ୍ଥାକୁ ନେଇ ଆସେ ଯାହା ଫଳରେ କି ବିପ୍ଳବ ଅବଶ୍ୟମ୍ଭାବୀ । କମ୍ରେଡ୍ ଷ୍ଟାଲିନ୍ ସେଗୁଡ଼ିକ ଅତି ପ୍ରାଞ୍ଜଳ ଭାବରେ ଦେଖାଇ ଦେଇ ଅଛନ୍ତି । ସେ ସଂଘର୍ଷ ହେଉଛି ତିନୋଟି । ସେ ଗୁଡ଼ିକ ତଳେ ଦିଆଗଲା ।

୧ । ପ୍ରଥମ ସଂଘର୍ଷ ହେଉଛି ସର୍ବହରା ଓ ପୁଞ୍ଜିପତିଙ୍କ ଭିତରେ, ଏକଚାଟିଆ ବଣିକ ସଂଘ ଓ ଅର୍ଥନୈତିକ ଗୋଷ୍ଠୀତନ୍ତ୍ର ସାମ୍ରାଜ୍ୟବାଦକୁ ଜନ୍ମ ଦେଇଅଛି । ତେଣୁ ସାମ୍ରାଜ୍ୟବାଦ ଶିଳ୍ପ-ପ୍ରଧାନ ଦେଶମାନଙ୍କରେ ଅର୍ଥପୁଞ୍ଜି ବା ଏକଚାଟିଆ ବାଣିଜ୍ୟ ସଂଘ ପ୍ରଭୁତ୍ୱର ଅନ୍ୟ ରୂପ । ସର୍ବହରା ଗତାନୁଗତିକ ଭାବରେ ଟ୍ରେଡ୍ ୟୁନିୟନ; ସମବାୟ ସଂଘ କାଉନ୍ସିଲ୍ ଓ ଆସେମ୍ବ୍ଲି ଦ୍ୱାରା, ବୈଧାନିକ ଆନ୍ଦୋଳନ ଦ୍ୱାରା ଆନ୍ଦୋଳନ କରି ଦେଖି ଅଛନ୍ତି ଯେ, ଏହି ବାଟରେ କୌଣସି ବିଶେଷ ଫଳ ହେଉ ନାହିଁ । ହୁଏ ତ ପୁଞ୍ଜିବାଦର ଶରଣାର୍ଥୀ ହୋଇ ଯେ କୌଣସି ମତେ ଜୀବନକୁ ଦୁଃଖ ଓ ନିର୍ଯ୍ୟାତନା ଭିତରେ କଟାଇବାକୁ ପଡ଼ିବ ନଚେତ୍ ଗୋଟାଏ କିଛି ନୂଆ ପ୍ରକାର ଅସ୍ତ୍ର ଧାରଣ କରିବାକୁ ପଡ଼ିବ । ଏହି ଦୁଇଟାରୁ ଗୋଟାଏ ସମସ୍ତ ସର୍ବହରା ଶ୍ରେଣୀକୁ ବାଛି ନେବାକୁ ସାମ୍ରାଜ୍ୟବାଦ କହେ । ତେଣୁ ସାମ୍ରାଜ୍ୟବାଦ ବିପ୍ଳବ ଆଡ଼କୁ ସର୍ବହରାକୁ ଟାଣି ଆଣେ ।

୨ । ଦ୍ୱିତୀୟ ସଂଘର୍ଷ ହେଉଛି ଭିନ୍ନ ସାମ୍ରାଜ୍ୟବାଦୀ ଦେଶ ଓ ପୁଞ୍ଜିପତି ଗୋଷ୍ଠୀମାନଙ୍କ ଭିତରେ । କାହିଁକି ? କାରଣ

ପ୍ରତ୍ୟେକ ସାମ୍ରାଜ୍ୟବାଦୀ ଦେଶ ଅନ୍ୟାନ୍ୟ ଦେଶ ଅଧିକାର କରି ସେଠାରେ ଥିବା କଞ୍ଚା ମାଲ ପାଇବା ପାଇଁ ଅନବରତ ଚେଷ୍ଟା କରେ । ତେଣୁ କଳହ ବା ସଂଘର୍ଷ ହୁଏ ।

ସାମ୍ରାଜ୍ୟବାଦ ବୋଇଲେ କଣ ? ସାମ୍ରାଜ୍ୟବାଦ ହେଉଛି ବିଦେଶକୁ ପୁଂଜି ରପ୍ତାନୀ; ଅନ୍ୟ କଥାରେ ଯେଉଁ ଯେଉଁ ଦେଶରେ ବା ସ୍ଥାନରେ କଞ୍ଚାମାଲ ଖୁବ୍ ବେଶୀ ପରିମାଣରେ ମିଳେ, ସେହି ସେହି ସ୍ଥାନକୁ ନିଜ କରତଳ କରି କଞ୍ଚାମାଲ ଆଣି ବ୍ୟବସାୟ ବୃଦ୍ଧି କରିବା । ଅଧିକନ୍ତୁ ମଧ୍ୟ ସାମ୍ରାଜ୍ୟବାଦ ବୋଇଲେ ଆମ୍ଭେ ବୁଝୁ ଯେ, ବିଭିନ୍ନ ପୁଂଜିପତି ଏକଚାଟିଆ ସଂଘମାନଙ୍କ ଦ୍ୱାରା ଅଧିକୃତ ଓ ପରିଚାଳିତ ଦେଶମାନଙ୍କ ମଧ୍ୟରେ ସେହି ସଂଘମାନଙ୍କ ଭିତରେ ସଂଘର୍ଷ ବା ଲଢାଇ । ଏହି ନୂଆ ନୂଆ ଏକଚାଟିଆ ପୁଂଜିପତି ସଂଘମାନ ବିଭକ୍ତ ହୋଇଥିବା ପୃଥିବୀକୁ ପୁନର୍ବିଭାଗ କରିବାକୁ ଯାଇ ସଂଘର୍ଷ ଆଣନ୍ତି । ଏହି ବିଭିନ୍ନ ପୁଂଜିବାଦୀ ଶକ୍ତିମାନେ ବିଦେଶୀ ରାଜ୍ୟ ସବୁ ଅଧିକାର କରିବାକୁ ଜୀବନମୂର୍ଚ୍ଛା ଯୁଦ୍ଧ ଚଳାନ୍ତି । ଏହା ଅନିବାର୍ଯ୍ୟ ହୋଇପଡ଼େ । ଏହାକୁହିଁ ସାମ୍ରାଜ୍ୟବାଦ ଯୁଦ୍ଧ କହନ୍ତି । ଏ ଅବସ୍ଥା ଘଟିବା ଦ୍ୱାରା ସାମ୍ରାଜ୍ୟବାଦ ଶକ୍ତି ଦୁର୍ବଳ ହୋଇ ପଡ଼େ, ପୁଂଜିବାଦ କ୍ଷୟ ପାଏ ଓ ସର୍ବହରା ବିପ୍ଳବ ଜନ୍ମ ଘେନେଇ ଆସେ ।

୩ । ତୃତୀୟ ସଂଘର୍ଷ ହେଉଛି, କେତେ ଗୁଡ଼ିଏ ତଥାକଥିତ ସଭ୍ୟ ଦେଶମାନଙ୍କର ଶାସକ ଗୋଷ୍ଠୀ ଭିତରେ ଓ ପୃଥିବୀର ପରାଧୀନ ଉପନିବେଶମାନଙ୍କର କୋଟି କୋଟି ଦଳିତ ମାନବଙ୍କ ଉପରେ, ସାମ୍ରାଜ୍ୟବାଦର ନଗ୍ନଶୋଷଣ ଓ ଅମାନୁଷିକ ଅତ୍ୟାଚାର ପ୍ରକାଶ

ଥାଏ । ଏପରି ଘୃଣ୍ୟ ଶୋଷଣ ଓ ଅତ୍ୟାଚାରର ଉଦ୍ଦେଶ୍ୟ ହେଉଛି କପରି ଲାଭ ଉପରେ ଅଧିକ ଅଧିକା ଲାଭ କରିବା । ଶୋଷଣକୁ ଉତ୍ତରୋତ୍ତର ଭାବେ ତେଜୀୟାନ କରିବାକୁ ହେଲେ ରେଲ, ମିଲ, ଫ୍ୟାକ୍‌ଟେରୀ, ଶିଳ୍ପ ଓ ବ୍ୟବସାୟ କେନ୍ଦ୍ରମାନ ଖୋଲିବା ପାଇଁ ସାମ୍ରାଜ୍ୟବାଦ ବାଧ୍ୟ ହୁଏ । ଫଳରେ ସର୍ବହରା ଶ୍ରେଣୀର ଉଦୟ ହୁଏ । ଜାତୀୟ ଚେତନା ଉତ୍ତରୋତ୍ତର ବଢ଼େ । ଶିକ୍ଷାର ପ୍ରସାର ହୁଏ । ସ୍ୱାଧୀନତାର ଆନ୍ଦୋଳନ ଗଢ଼ି ଉଠେ । ଏହାହିଁ ହେଲା ସାମ୍ରାଜ୍ୟବାଦୀ ନୀତିର ଅପରିବର୍ତ୍ତିନୀୟ ପରିଣତି । ପ୍ରତ୍ୟେକ ପରାଧୀନ ଦେଶରେ, ଉପନିବେଶମାନଙ୍କରେ ସ୍ୱାଧୀନତା ଆନ୍ଦୋଳନ ଗଢ଼ି ଉଠିବା ଦ୍ୱାରା ଏହା ସ୍ପଷ୍ଟ ପ୍ରମାଣିତ ହେଉଛି । ସର୍ବହରା ପକ୍ଷରେ ଏହା ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା । କାରଣ ପୁଞ୍ଜିବାଦୀ ଏହାଦ୍ୱାରା ଦୁର୍ବଳ ହୋଇଯାଏ । ସାମ୍ରାଜ୍ୟବାଦ ଉପନିବେଶମାନଙ୍କୁ ତାର ଶେଷ ଅସ୍ତ୍ର କରିବାକୁ ଇଚ୍ଛା କଲେ ସୁଦ୍ଧା ଉପନିବେଶମାନେ ସର୍ବହରା ବିପ୍ଳବର ଅଗ୍ର ଗାମୀ ସୈନ୍ୟରେ ପରିଣତ ହୁଅନ୍ତି ।

ଉପର ଲିଖିତ ଭାବେ କମ୍ରେଡ଼ ଷ୍ଟାଲିନ ସାମ୍ରାଜ୍ୟବାଦର ସଂଘର୍ଷଗୁଡ଼ିକ ବର୍ଣ୍ଣନା କରିଅଛନ୍ତି । ସାମ୍ରାଜ୍ୟବାଦର ପତନ ଯେ ଅବଶ୍ୟମ୍ଭାବୀ ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି । ସାମ୍ରାଜ୍ୟବାଦ ଯୁଗରେ ପୁଞ୍ଜିବାଦର ସମସ୍ତ ସଂଘର୍ଷଗୁଡ଼ିକ ଉପର ଲିଖିତ ଭାବେ ତୀବ୍ରତର ହୋଇ ଉଠେ । ଶ୍ରମିକଶ୍ରେଣୀର ବୁର୍ଜୁଆ ସହିତ ସଂଘର୍ଷ ଅଧିକ ଘନେଇ ଉଠେ । ଏହି ଶ୍ରେଣୀ ସଂଘର୍ଷ ଯେତିକି ଉତ୍କଟ ହେଉଥାଏ, ସର୍ବହରାର ସାମ୍ୟବାଦ ପ୍ରତିଷ୍ଠା କରିବା ପାଇଁ ବିପ୍ଳବ ସେତିକି ନିକଟେଇ ଆସୁଥାଏ । ଶ୍ରମିକସଂଘ, କୃଷକସଂଘମାନ ଗଢ଼ା ହୁଏ । ଶୋଷକ ଶ୍ରେଣୀ

ବିରୁଦ୍ଧରେ ଅବିରାମ ସଂଘର୍ଷ ଚାଲେ ଏବଂ ଏହି ସଂଘର୍ଷ ବା ଯୁଦ୍ଧ ସର୍ବହରା ଶ୍ରେଣୀର ସବୁଠାରୁ ସଚେତନ ବ୍ୟକ୍ତିମାନଙ୍କ ଦଳ ବା ପାର୍ଟି ଦ୍ୱାରା ଠିକ ମାର୍ଗରେ ନିୟନ୍ତ୍ରିତ ଓ ସଂଗଠିତ ହୁଏ । ଏହି ଦଳ ବା ପାର୍ଟିର ନେତୃତ୍ୱରେ ଶ୍ରମିକ ଓ କୃଷକ ଶ୍ରେଣୀ କାହିଁକି ଓ କିପରି ଆନ୍ଦୋଳନ ବା ବିପ୍ଳବକୁ ଉପଯୁକ୍ତ କରିବାକୁ ହେବ ତାହା ଜାଣନ୍ତି । ଏହି ଦଳ ବା ପାର୍ଟି କେଉଁ ଅବସ୍ଥାରେ କିପରି ଭାବରେ ଆନ୍ଦୋଳନ ଚଳାଇବାକୁ ହେବ ଓ ଅବସ୍ଥା ଦେଖି ତାର ରୂପ କିପରି ବଦଳାଇବାକୁ ପଡ଼ିବ ତାହା ନିର୍ଦ୍ଦେଶ ଦିଏ ଓ ସେହି ଅନୁସାରେ ବିପ୍ଳବକୁ ଉପଯୁକ୍ତ କରି ଚାଷୀ ମୂଲିଆ ହାତକୁ କ୍ଷମତା ଆଣିବା ପାଇଁ ଜନସାଧାରଣଙ୍କୁ ପ୍ରସ୍ତୁତ କରେ ।

## ଫାଶିଷ୍ଟବାଦ

ପୁଞ୍ଜିବାଦ କିପରି ଦୁନିଆକୁ ଅନ୍ତଃସାରଶୂନ୍ୟ କରି ପକାଇ ଶେଷରେ ନିଜର କବର ଖୋଳାଇବାକୁ ବାଧ୍ୟ ହୁଏ, ତାର ଆଲୋଚନା ଆଗରୁ ହୋଇସାରିଛି । ପୁଞ୍ଜିବାଦ ବଞ୍ଚି ରହିବା ପାଇଁ କିପରି ଶେଷ ଚେଷ୍ଟା କରେ ତାର ସମ୍ୟକ ଆଭାସ ଦେବା ଉଚିତ । ପୁଞ୍ଜିବାଦର ଏହି ଅବସ୍ଥା ଅତି ଭୟଙ୍କର । ଏହି ଅବସ୍ଥାରେ ପୁଞ୍ଜିବାଦ ଗୋଟାଏ ଧ୍ୱଂସର ପ୍ରତିମୂର୍ତ୍ତି ହୋଇ ଉଠେ । ସବୁଦିନ ପରି ଗୋଟିଏ ଗୋଟିଏ ଜୀବ ସୃଷ୍ଟି କରେ । କଂସ ସବୁଆଡ଼େ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଦେଖିଲା ଭଳି ଏହା ସବୁଆଡ଼େ ଦଳିତ ଦୁଃଖୀ ଜନତାର ବିପ୍ଳବ ଅନୁଭବ କରେ । ଏହି ଅବସ୍ଥାର ନାମ ଫାଶିଷ୍ଟ ବାଦ ।

ଫାଶିଷ୍ଟବାଦ ପ୍ରଥମେ ଇଟାଲୀରେ ଜନ୍ମଗ୍ରହଣ କଲା ଓ ମୁସୋଲିନୀଙ୍କ ବାହୁଗୁସ୍ଥା ତଳେ ଶକ୍ତି ଲାଭ କଲା । ଜର୍ମାନୀରେ ଫାଶିଷ୍ଟବାଦର ନାମ 'ନାଜୀବାଦ' ବା 'ଜାତୀୟ ସମାଜବାଦ'। ଏହାକୁ ହିଟଲରୀବାଦ୍ ମଧ୍ୟ କୁହାଗଲା । ଜାପାନ ମଧ୍ୟ ସେହି ଧର୍ମରେ ଦୀକ୍ଷିତ ହେଲା । ଜର୍ମାନୀ ଭଳି ଅନ୍ୟ ଅଧୁନିକ ଦେଶରେ ଯେତେବେଳେ ଫାଶିଷ୍ଟବାଦ ଦେଖା ଦେଲା ସେତେବେଳେ ଏହା ପୃଥିବୀ—ଫାଶିଷ୍ଟବାଦର ନେତା ରୂପେ ଠିଆ ହେଲା ଓ ଅତି ଭୟଙ୍କର ରୂପ ନେଲା ।

ଆଜି ପୃଥିବୀ--ଫାଶିଷ୍ଟବାଦ ପରାସ୍ତ ହୋଇଛି ସତ, କିନ୍ତୁ ତାର ସ୍ୱରୂପ ଓ ଦର୍ଶନ ଠିକ ଜାଣି ରଖିବା ଉଚିତ ।

ପୁଞ୍ଜିବାଦୀ ଅବସ୍ଥାରେ ବିଭିନ୍ନ ସଂଗଠନମାନଙ୍କୁ (ଶ୍ରମିକ, କୃଷକ ପ୍ରଭୃତି) ଯଥାକଥିତ ସ୍ୱାଧୀନତା ଦିଆ ହେବା ଫଳରେ ଶ୍ରମିକ ସଂଘ ତାର ସଂଗଠନ ଓ ଆନ୍ଦୋଳନ କରିବା ପାଇଁ ସମର୍ଥ ହୁଏ । ପୁଞ୍ଜିବାଦୀ ସଂସ୍ଥା ବା ପୁଞ୍ଜିବାଦୀ ସରକାର ଅଚଳରେ ପଡ଼େ । ଘନ ଘନ ଅର୍ଥନୈତିକ ସଙ୍କଟ ପଡ଼ିବାରୁ ତାକୁ ସମ୍ଭାଳିବା ତା ପକ୍ଷରେ କଷ୍ଟକର ହୁଏ । ପ୍ରତିମୁହୂର୍ତ୍ତରେ ସର୍ବହରାର ସଂଗଠନ ଶକ୍ତି ଆଗରେ ନିଜେ ଭୁଷୁଡ଼ି ପଡ଼ିବ ବୋଲି ଆଶଙ୍କା କରେ । କ୍ରମେ ତାର ଶକ୍ତି ହ୍ରାସ ହୋଇଆସେ । ଏ ସଙ୍କଟରୁ ବର୍ତ୍ତିବାର ଠିକ ଉପାୟ ଖୋଜି ପାଏ ନା । କିନ୍ତୁ ଫାଶିଷ୍ଟବାଦ ତାର ଉପାୟ ବତାଇ ଦିଏ ।

## ଏହି ଫାଶିଷ୍ଟବାଦ କଣ ?

ଏହା ପୁଞ୍ଜିବାଦର ନାମାନ୍ତର ମାତ୍ର ବା ଏହା ପୁଞ୍ଜିବାଦର ଉତ୍କଟ ଅବସ୍ଥା । ଅର୍ଥାତ କେତେ ଜଣ ଏକଚାଟିଆ ପୁଞ୍ଜିପତିଙ୍କର

ଅସ୍ଥା । ଏହିମାନଙ୍କ ନିର୍ଦ୍ଦେଶରେ ସରକାର ପରିଚାଳିତ ହୁଏ । ଏହି
ଫାସିଷ୍ଟବାଦ କହେ 'ରେ ପୁଞ୍ଜିବାଦ ତୁ ଯେହେତୁ ଶ୍ରମିକ ଓ ଅନ୍ୟାନ୍ୟ
ସାଧାରଣ ଅନୁଷ୍ଠାନମାନଙ୍କୁ ସଂଗଠନ କରିବାର ଓ କିଛି ସୁବିଧା
ପାଇବାର ତଥାକଥିତ ସ୍ୱାଧୀନତା ଦେଇଛୁ, ସେଥିପାଇଁ ତୁ ହଇରାଣରେ
ପଡ଼ିଛୁ' । ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ, ଫାସିଷ୍ଟବାଦ ଅବସ୍ଥାରେ
କୌଣସି ରକମର ସ୍ୱାଧୀନତା ନାହିଁ । ଫାସିଷ୍ଟବାଦ ଶାସନ
ଅର୍ଥ ବନ୍ଧୁକ୍ ମୁନର ଶାସନ, ଏ ଶାସନରେ ସାମାନ୍ୟ ନାଗରିକ
ସ୍ୱାଧୀନତା ତ ଦୂରର କଥା; ଏପରିକି ସ୍ନେହ, ଶ୍ରଦ୍ଧା, ନ୍ୟାୟ
ଧର୍ମର ମଧ୍ୟ ସ୍ଥାନ ନାହିଁ ।

ଫାସିଷ୍ଟବାଦ ଅର୍ଥ ଯୁଦ୍ଧ । ଫାସିଷ୍ଟବାଦ ସଂସ୍ଥାରେ ଦେଶର
ସମସ୍ତ ଶକ୍ତିକୁ ଯୁଦ୍ଧ ପାଇଁ ନିୟୋଜିତ କରାଯାଏ । ଯେହେତୁ
ଏହି ସଂସ୍ଥା କେତେକ ମୁଷ୍ଟିମେୟ ପୁଂଜିକୁବେରଙ୍କ ଦ୍ୱାରା
ପରିଚାଳିତ ସେହିହେତୁ ଏହା ଅଧିକରୁ ଅଧିକ ମୁନାଫାପାଇଁ
ଅନ୍ୟାନ୍ୟ ପୁଂଜିବାଦୀ ବା ସାମ୍ରାଜ୍ୟବାଦୀ ଦେଶମାନଙ୍କୁ ପରାସ୍ତ
କରି ନିଜେ ସବୁର ମାଲିକ ହେବା ଉଦ୍ଦେଶ୍ୟରେ ନିଜ ଦେଶକୁ
ପ୍ରସ୍ତୁତ କରେ । ତେଣୁ ଫାସିଷ୍ଟବାଦର ନୀତି ହେଉଛି ଯୁଦ୍ଧନୀତି ।
ସାରା ଦେଶକୁ ଯୁଦ୍ଧ ପାଇଁ ତିଆରି କଲେ ପୃଥିବୀକୁ ଗ୍ରାସ
କରିବା ପାଇଁ ସୁବିଧା ହେବ ଓ ଦେଶରେ କୌଣସି ପ୍ରକାର
ବାଧା ବା ପ୍ରତିବନ୍ଧକ ରହିବ ନାହିଁ । ଏହି ମୂଳ ନୀତିକୁ ପୁଷ୍ଟ
କରିବା ପାଇଁ ଉପାୟମାନ ଉଦ୍ଭାବନ କରାଯାଏ । ମୁସୋଲିନୀଙ୍କ
୧୯୩୭ ମାର୍ଚ୍ଚ ୨୩ ତାରିଖ ବକ୍ତୃତା ଓ ହିଟ୍ଲରର ଯୁଦ୍ଧମନ୍ତ୍ରୀ
ଜେନେରାଲ୍ ଭନ୍ ବ୍ଲୋମବର୍ଗଙ୍କର ୧୯୩୭ର ଲେଖା ପଢ଼ିଲେ
ଏହା ସ୍ପଷ୍ଟ ଜଣାପଡ଼େ ।

ମୁଚୋଲିନୀ କହୁଥିଲେ—"ଦେଶକୁ ଗୋଟିଏ ସାମରିକ ବାହିନୀ କରି ଗଢ଼ି ତୋଳିବା ଇଟାଲୀୟ ଅର୍ଥନୀତିର ଯୋଜନାର ପ୍ରଧାନ ଲକ୍ଷ୍ୟ ......"।

ହ୍ଵୋମବର୍ଗ କହୁଥିଲେ—"ଅଧୁନିକ ଯୁଦ୍ଧର ନୀତି ହେଉଛି ଦେଶର ସମସ୍ତ ଶକ୍ତିକୁ ନିୟୋଜିତ କରିବା। ଏହି ନୀତି ଜାତୀୟ ସମାଜବାଦ ( ନାଜିବାଦ ) ନୀତି ସହିତ ପୂରା ଖାପ ଖାଉଛି"।

ପ୍ରତ୍ୟେକ ଦେଶରେ ଫାଶିଷ୍ଟବାଦ ପ୍ରତି ବହୁ ପ୍ରତିପତ୍ତିଶାଳୀ, ଶିକ୍ଷିତ ଓ ସମ୍ଭ୍ରାନ୍ତ ଲୋକଙ୍କର ବହୁବର୍ଷ ପର୍ଯ୍ୟନ୍ତ ମମତା ଥିଲା ବା ଅନ୍ୟକଥାରେ ଫାଶିଷ୍ଟବାଦ ଏମାନଙ୍କ ବହୁଦିନ ପର୍ଯ୍ୟନ୍ତ ଠକେଇ ଆସିଥିଲା। ଅଜ ଫାଶିଷ୍ଟବାଦର ପରାଜୟ ପରେ ମଧ୍ୟ ଭାରତରେ ଫାଶିଷ୍ଟବାଦ ପ୍ରତି ମମତା ଥିବାର ଦେଖାଯାଏ। ଏହା ଯେ ଅନେକ ଧୂଳନେତ୍ର ଲୋକର ଅଜ୍ଞତାର କାରଣ ଏଥିରେ ସନ୍ଦେହ ନାହିଁ। କିନ୍ତୁ କେତେକ ସ୍ଥାନରେ ଫାଶିଷ୍ଟନୀତି ଜାଣି ଶୁଣି ମଧ୍ୟ ଅନୁସରଣ କରାଯାଏ। ବହୁ ରାଷ୍ଟ୍ରନୀତିଜ୍ଞ, ପୁଞ୍ଜିବାଦୀ, ଅର୍ଥବାଦୀ ଏହି ଫାସିଷ୍ଟବାଦର ସ୍ତୁତିଗାନ କରିଛନ୍ତି। ଫାଶିଷ୍ଟ-ବାଦର ଅପକର୍ମମାନ ଓ ନାରକୀୟ କାର୍ଯ୍ୟାବଳୀର ଖବର ପଦାରେ ପ୍ରକାଶ କରାଇ ଦିଆ ଯାଏ ନାହିଁ। ତେବେ ତଥାକଥିତ ପଦବୀସ୍ଥ ଲୋକେ ଏହି ସଂସ୍କାରର ପ୍ରଶଂସା କଲାରୁ ଲୋକେ ଫାଶିଷ୍ଟବାଦର ଅପକୀର୍ତ୍ତିଗୁଡ଼ିକୁ ବିଶ୍ୱାସ କରି ପାରନ୍ତି ନାହିଁ। ଅଜ ଫାଶିଷ୍ଟ ରାଜ୍ୟମାନ ପରାସ୍ତ ହୋଇଥିଲେହେଁ ଫାଶିଷ୍ଟବାଦ ମରି ନାହିଁ, ଏବେ ମଧ୍ୟ ଫାଶିଷ୍ଟ ମନୋବୃତ୍ତି ସଂପନ୍ନ ଓ ଫାଶିଷ୍ଟ ଦର୍ଶନ ଅନୁସରଣ କରୁଥିବା ଅନେକ ସଂସ୍ଥା ଆତ୍ମପ୍ରକାଶ କରି ଦେଖିବାକୁ ପାଉଁ। ସେଥିପାଇଁ ଫାଶିଷ୍ଟବାଦର ଦର୍ଶନ ଓ ସମୂଳ ରୂପ ଠିକ୍ ଜାଣି ରଖିବା ଦରକାର।

ସାଧାରଣ ଲୋକଙ୍କୁ ବହୁତକ୍ଷେତ୍ରରେ ବୁଝାଯାଏ ଯେ, ସମାଜବାଦ ଯାହା ହିଟଲରର ନାଜୀବାଦ ବା ଜାତୀୟ ସମାଜ ବାଦ ମଧ୍ୟ ସେହିପରି । ବରଂ ଫାସିଷ୍ଟବାଦର ଅର୍ଥନୈତିକ ଓ ସାମାଜିକ ସଂଗଠନର ଦୃଢ଼ତାକୁ ପ୍ରଶଂସା କରାଯାଏ ।

ସମାଜବାଦର ଫାସିଷ୍ଟବାଦ ସହିତ କୌଣସି ସାମଞ୍ଜସ୍ୟ ନାହିଁ । ସମାଜବାଦ ପ୍ରତିଷ୍ଠା ହେଲେହିଁ ଯୁଦ୍ଧ ବନ୍ଦ ହେବ, ଦାରିଦ୍ର୍ୟ ଘୁଞ୍ଚିବ ଓ ବର୍ତ୍ତମାନ ସମାଜରେ ଥିବା ସମସ୍ତ ପ୍ରକାର ଅସାମଞ୍ଜସ୍ୟ, ଦୁଃଖକଷ୍ଟ ଦୂର ହେବ । ଏହାହିଁ ଦୁନିଆରେ ଶ୍ରମୀ ମୂଲିଆଙ୍କର ଆଶା ଓ ବଳ । ସମାଜବାଦୀ ସଂସ୍ଥାରେ ଶ୍ରେଣୀ ରହେ ନାହିଁ, ଅର୍ଥାତ୍ ଧନୀ, ଗରିବ ଏପରି ଶ୍ରେଣୀ ନାହିଁ । ସର୍ବସାଧାରଣ ଉପକାର ପାଇଁ ବ୍ୟକ୍ତିଗତ ମାଲିକାନାରେ ଥିବା ସମସ୍ତ ବଡ଼ ବଡ଼ କଳକାରଖାନା, ଜମିଦାରୀ ପ୍ରଭୃତି ସରକାର ହାତକୁ ଚାଲି ଆସେ ଅର୍ଥାତ୍ ଜନସାଧାରଣଙ୍କ ହାତକୁ ଆସେ । ଏହାଦ୍ୱାରା ସମସ୍ତଙ୍କୁ ସମାନ ଅଧିକାର ଓ ସମାନ ସୁବିଧା ମିଳେ । ସମସ୍ତେ ଜାତୀୟ ସମ୍ପଦରେ ଭାଗୀଦାର ହୁଅନ୍ତି ଓ ସମସ୍ତେ ସମାନ ଭାବରେ ଫଳ ଭୋଗ କରିବାର ସୁବିଧା ପାଆନ୍ତି । ଏହାଦ୍ୱାରା ସମାଜର ଗୋଟିଏ ଶ୍ରେଣୀର ଅନ୍ୟଶ୍ରେଣୀ ଉପରେ ଶୋଷଣ କରିବାର ଏକଚାଟିଆ ବାଣିଜ୍ୟ ମୂଳପୋଛ ହୁଏ । ତେଣୁ ପ୍ରକୃତରେ ଏହି ସ୍ୱାଧୀନ ସମାଜରେ ସମସ୍ତେ ସମାନ ଭାବରେ ନାଗରିକ ଅଧିକାର ବ୍ୟବହାର କରିବା ପାଇଁ ମୂଳଦୁଆ ପଡ଼େ ।

କିନ୍ତୁ ଫାସିଷ୍ଟବାଦ ଜୋର ଜବରଦସ୍ତି କରି ଶ୍ରେଣୀ ବିଭାଗ ଚାଲୁ ରଖେ । ଅର୍ଥାତ୍ ଦେଶରେ ଗୋଟିଏ ଏକଚାଟିଆ ପୁଞ୍ଜିପତି ଶ୍ରେଣୀ ଓ କୋଟି କୋଟି ଦରିଦ୍ର ଜନସାଧାରଣ—ଶ୍ରେଣୀ

ହଡ଼ାପୂ ରହେ । ଏହି ଦରଦ୍ର ଜନସାଧାରଣଙ୍କର କୌଣସି ରକମର ଅଧିକାର ନ ଥାଏ । ଏପରି କି ସାଧାରଣ ପୁଞ୍ଜିପତି ସଂସ୍ଥାରେ କୃଷୀ ଓ ମଜୁରିଆମାନେ ଯେଉଁ ସବୁ ଅଧିକାର ହାସଲ କରିଥାନ୍ତି ସେସବୁ ମଧ୍ୟ ରହେ ନାହିଁ । କୃଷି ବା ଶ୍ରମିକ ସଂଗଠନକୁ ମାଡ଼ି ମକଚି ଦିଆଯାଏ ଓ ଏମାନଙ୍କର ନେତାମାନଙ୍କୁ ଦେଶଦ୍ରୋହୀ ବୋଲି ପ୍ରଚାର କରି ଏମାନଙ୍କୁ ଦଳିଚପି ଦିଆ ଯାଏ । ଦେଶ ଓ ଜାତି ନାମରେ ବହୁପ୍ରକାରର ଫନ୍ଦଫିକର କରି, ମିଲ ଅଜଡ଼ାର ଓ କ୍ରୋଡ଼ପତିମାନଙ୍କ ସାହାଯ୍ୟରେ ଟଙ୍କା ଆଣି ତାକୁ ପ୍ରଚାର କାର୍ଯ୍ୟରେ ଲଗାଇ ଜନସାଧାରଣଙ୍କ ଆଗରେ କୃଷୀ ମଜୁରିଆର ନେତାମାନଙ୍କୁ ହଲାକାନ୍ତ କରି ଦିଆଯାଏ । କେବଳ ସେତିକି ନୁହେଁ; ଜେଲ, ଫାଶୀ, ନାନାରକମର ଅତ୍ୟାଚାର ଓ ଦମନ ଦ୍ୱାରା ଲୋକଙ୍କୁ ଭୟଭୀତ କରାଯାଏ । ଏହାହିଁ ଫାଶିଷ୍ଟବାଦ ।

# ଫାଶିଷ୍ଟବାଦ କଣ କହେ, କଣ କରେ

କ୍ଷମତା ଆସିବା ପୂର୍ବରୁ ଜନସାଧାରଣଙ୍କର ସମର୍ଥନ ପାଇବା ପାଇଁ ଫାଶିଷ୍ଟବାଦ କଥାମିଛ କହି ଲୋକଙ୍କୁ ଭୁଲାଏ । ଇଟାଲିର ଫାଶିଷ୍ଟମାନେ ନିମ୍ନଲିଖିତ ଭାବେ ଡାକରା ଦେଇଥିଲେ । ଆମ୍ଭେମାନେ ଏକଦଳୀ ଶାସନ ଲୋପ କରିବୁ—ବାଧ୍ୟତାମୂଳକ ସାମରିକ ଶିକ୍ଷା ଲୋପ କରିବୁ—ମଠ ଧନ କୋଠ କରିବୁ—ଶ୍ରମିକ ଓ କାରିଗରମାନଙ୍କର ହାତକୁ ଶିଳ୍ପ କାରଖାନାମାନ ଦିଆଯିବ ।

କିନ୍ତୁ କଲେ କଣ ? ସମସ୍ତଙ୍କର ମନେଥିବ ଯେ, ଯୁଦ୍ଧ ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ଇଟାଲି ପତନ ପର୍ଯ୍ୟନ୍ତ ଇଟାଲିରେ ସାମ୍ରାଟ

ଥିଲେ । ଲୋକଙ୍କୁ ବାଧ୍ୟତାମୂଳକ ସୈନ୍ୟଶ୍ରେଣୀଭୁକ୍ତ କରା ହେଲା । ସମସ୍ତ ପ୍ରକାର ମଠ ଧନ ରକ୍ଷିଲ ଓ ତାଙ୍କର ସାହାଯ୍ୟରେ ସ୍ୱଳ୍ପ ମୂଲିଆ ମାନଙ୍କୁ ଉଚ୍ଛେଦ କରାଗଲା । ଶ୍ରମିକମାନେ ଅଧିକରୁ ଅଧିକ ଶୋଷିତ ହେଲେ । ବର୍ତ୍ତମାନ ଇଟାଲୀର ଶକ୍ତିଶାଳୀ ଶ୍ରମିକ ସଂଗଠନ ତାର ନମୁନା ।

# ହିଟଲରର ନାଜୀପାର୍ଟିର କାର୍ଯ୍ୟକ୍ରମ ଓ ପ୍ରକୃତ କାର୍ଯ୍ୟ

| କାର୍ଯ୍ୟକ୍ରମ | ପ୍ରକୃତ କାର୍ଯ୍ୟ |
| --- | --- |
| ୧ । ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାର ସୂତ୍ରରେ ବୃହତ୍ତର ଓ ମିଳିତ ଜର୍ମାନୀ ଗଠନ । | ୧ । ଆତ୍ମନିୟନ୍ତ୍ରଣର ଅଧିକାର ଅସ୍ୱୀକାର କରାଗଲା, ସାରା ଇଉରୋପ ଉପରେ ଅଭିଯାନ ହେଲା । |
| ୨ । କାମ ନ କରି ଅନ୍ୟକୁ ଶୋଷଣ କରି ଧନ କମେଇବା ପ୍ରଥାର ଲୋପ ଅର୍ଥାତ ମହାଜନୀ ଓ ଅନ୍ୟାନ୍ୟ ସୁଧ କାରବାରରେ ଧନୀ ହେବା ଦ୍ୱାରା ଯେଉଁ ଦାସତ୍ୱ ପ୍ରଥା ଚାଲୁ କରାଯାଇଛି ତାର ଉଚ୍ଛେଦ ସାଧନ । | ୨ । କୋଟି-କୋଟିପତିଙ୍କର ସଂଖ୍ୟାବୃଦ୍ଧି । ୧୯୩୨ ଠାରୁ ୧୯୩୭ ଭିତରେ ୧୮୦ ଜଣ ଏହିପରି ଧନ କୁବେର ବଢ଼ିଛନ୍ତି । |

୩ । ସମସ୍ତ ପ୍ରକାର ବାଣିଜ୍ୟ ଓ ପୁଂଜିପତି ସଂଘକୁ ଜାତୀୟ ସମ୍ପଦରେ ପରିଣତ କରିବା-- ଅର୍ଥାତ୍ ବଡ଼ କଲକାରଖାନା ଓ ଶିଳ୍ପ ସଂଗଠନମାନ ସର-କାର ହାତକୁ ନେଇ ଆସିବା ।

୩ । କିନ୍ତୁ ହିଟଲରର ୧୨ ବର୍ଷ ରାଜତ୍ୱ ଭିତରେ ବଡ଼ ଶିଳ୍ପ ସଂଗଠନମାନ ଖୁବ୍ ବେଗରେ ବଢ଼ି ଚାଲିଛି— ଅର୍ଥାତ୍ ବ୍ୟକ୍ତିଗତ ଶିଳ୍ପପତି ଧନ କୁବେରମାନଙ୍କର ସଂଖ୍ୟା ବଢ଼ିଛି ।

୪ । ଲାଭଖୋର ଓ ଅନ୍ୟାୟ ପାଉଣା ନେବା ଲୋକଙ୍କୁ ଫାଶି ଦିଆଯିବ ।

୪ । କିନ୍ତୁ ଏମାନଙ୍କୁ ଫାଶୀ ଦିଆହେବା ପରିବର୍ତ୍ତେ କମ୍ୟୁ-ନିଷ୍ଟ, ସୋସିଆଲିଷ୍ଟ ଓ ଟ୍ରେଡ୍-ୟୁନିୟନର ଲୋକମାନଙ୍କୁ ମୂଳପୋଛ କରିଦିଆଗଲା— ଶତ୍‌ବାଣ୍ଡରେ କମ୍ୟୁନିଷ୍ଟମାନଙ୍କୁ ଫାଶୀ ଦିଆ ହୋଇଛି ।

ଜର୍ମାନୀର ଶ୍ରମିକ ଜାତୀୟମତରେ ଲେଖି ଦିଆ ହୋଇଥିଲା ଯେ, ମାଲିକ ଓ ଶ୍ରମିକମାନେ ଏକାଠି ମିଳାମିଶି ଦୁହିଁଙ୍କର ଉନ୍ନତି ପାଇଁ କାମ କରିବେ ।

ହିଟଲର କ୍ଷମତାକୁ ଆସିବା ପରେ ପରେହିଁ ସମସ୍ତ ଟ୍ରେଡ୍-ୟୁନିୟନ ଶ୍ରମିକସଂଘ ଉଠାଇ ଦିଆଗଲା । ଏହା ପରିବର୍ତ୍ତେ ଲେବର ଫ୍ରଣ୍ଟ ଖୋଲାଗଲା । ଯଦ୍ୱାରା ମାଲିକ ଓ ଶ୍ରମିକ ଏକାଠି ରହି ଉତ୍ପାଦନ ଦିଗରେ କାମ କରିବେ—ଫଳରେ ଶ୍ରମିକ-ମାନଙ୍କର ଦଶା ମଧ୍ୟଯୁଗର ଗୋଲାମ ଠାରୁ ହୀନ ହେଲା ଓ

ମାଲିକମାନେ ନାଜୀ ସରକାରର ଖୋସାମଦ୍‌କାରୀ ସନ୍ଧ୍ୟାସ୍ତୁତି ହୋଇ ରହିଲେ ।

୧୯୩୪ମସିହାରେ ଯେତେବେଳେ ଇଟାଲିର ଫାଶିଷ୍ଟବାଦ ଓ ନାଜୀ ଫାଶିଷ୍ଟବାଦ ଭିତରେ ଅହିନକୁଳ ସମ୍ବନ୍ଧ ଥିଲା ଓ ପ୍ରଥମେ ହିଟଲର କ୍ଷମତାକୁ ଆସିଲ, ଇଟାଲିର ଫାଶିଷ୍ଟ ଖବର କାଗଜ 'ଲଭରୋ ଫାଶିଷ୍ଟୋ' ନିମ୍ନଲିଖିତ ଭାବରେ ଲେଖିଥିଲା---

ଜର୍ମାନୀର ଜାତୀୟ ସମାଜବାଦ ଜର୍ମାନୀ ଶ୍ରମିକମାନଙ୍କୁ ହାତଗୋଡ଼ ବାନ୍ଧି ପୁଞ୍ଜିବାଦ ହାତରେ ଛାଡ଼ି ଦେଇଛି--ମଧ୍ୟଯୁଗର ବର୍ବରତାଠାରୁ ଏହା କମ୍ କଣ ? ଶ୍ରମିକମାନେ ଗତ ଶହେ ବର୍ଷ ଲଢ଼େଇ କରି ଯେଉଁ ଅଧିକାର ପାଇଥିଲେ ତାହା ଏକାବେଳକେ ନଷ୍ଟ ହୋଇଗଲା" ।

ନାଜୀ ଶାସନର ଇତିହାସ ଲେଖିବାର ଏଠାରେ ଅବଶ୍ୟକ ନାହିଁ---ଲେଖି ବସିଲେ ତାହା ଗ୍ରନ୍ଥ ହେବ । ଏଠାରେ କେବଳ ସୂଚନା ଦିଆ ଯାଉଛି ମାତ୍ର । ତେବେ ଫାଶିଷ୍ଟବାଦର ଦର୍ଶନ ସମ୍ବନ୍ଧରେ ଟିକେ କହି ରଖିବା ଦରକାର ।

## ଫାଶିଷ୍ଟବାଦର ଦର୍ଶନ

ଫାଶିଷ୍ଟବାଦ କହିଲେ ଯେ ଗୋଟାଏ କୌଣସି ବିଶେଷ ଦର୍ଶନ ଅଛି ବୋଲି ବୁଝାଯାଏ ତାହା ନୁହେଁ । ଏହା ହେଉଛି କ୍ଷମତା ଓ ଟଙ୍କାର ଦର୍ଶନ । ଯେଣୁ କ୍ଷମତାକୁ ପୂର୍ଣ୍ଣ ଭାବରେ ଜାହିର କରିବାକୁ ହେଲେ ଓ ଟଙ୍କା ବା ପୁଞ୍ଜିବାଦର

ଅଷ୍ଟୁଣ୍ଣ ରାଜତ୍ୱ ଚଳାଇବାକୁ ହେଲେ, ସମସ୍ତ ପ୍ରକାର ବାଧା ଓ ପ୍ରତିବନ୍ଧକଙ୍କୁ ସମୂଳେ ଧ୍ୱଂସ କରିବାକୁ ହେବ; ଗଣତନ୍ତ୍ରକୁ ପୋଡ଼ିଜାଳି ଦେବାକୁ ହେବ ଓ ଲହୁଲୁହା ଦ୍ୱାରା ଶାସନ କରିବାକୁ ହେବ ।

ଫାଶିଷ୍ଟବାଦ ମଣିଷ ଜାତିର ପ୍ରଧାନ ଶତ୍ରୁ । ଏହି ଫାଶିଷ୍ଟବାଦର ନୀତି କଣ ଜାଣିଲେ ଫାଶିଷ୍ଟବାଦର ସ୍ୱରୂପ ଜାଣି ହେବ ।

ନାଜୀ ସ୍କୁଲରେ ଦଶ ବର୍ଷଠୁଁ ସ୍ତୋଟ ପିଲାମାନଙ୍କୁ କି ପ୍ରକାର କବିତା ପଢ଼ାଯାଏ ଓ ମୁଖସ୍ଥ କରିବାକୁ କୁହାଯାଏ ଦେଖନ୍ତୁ---ଡ଼କ୍ଟର୍ କମରଙ୍କର 'ମୃତ୍ୟୁ ପରେ ଶିକ୍ଷା' ନାମକ ବହିରେ ଥିବା ଗୋଟିଏ ଇଂରାଜୀ କବିତାର ଓଡ଼ିଆ ଅନୁବାଦ ଦିଆଗଲା--"ଗୋଟିଏ ମାଙ୍କଡ଼ସା ଗୋଟିଏ ସ୍ତୋଟ ମାଛିକୁ ଖାଇବ ବୋଲି ମାଡ଼ି ବସିଲା । ସ୍ତୋଟ ମାଛିଟି ଉଦ୍ଧାର ପାଇବା ପାଇଁ ବହୁ ମିନତି କଲା କିନ୍ତୁ ପାଇଲା ନାହିଁ---

'କର ରକ୍ଷା' କହେ ମାଛି 'ବଞ୍ଚାଅ ମୋ ପ୍ରାଣ'<br>
'ଅଟେ ମୁହିଁ କେତେ ହୀନମାନ' !<br>
'ନାହି ରକ୍ଷା' କହେ ମାଙ୍କଡ଼ସା 'ନାହିଁ ତୋ ମୁକତି' !<br>
'ଯେ ହେତୁ ତୁ ଅଟୁ ସାନ, ମୁହିଁ ବଡ଼,<br>
ମୋର ବେଶୀ ତୋ ଠାରୁ ଶକତି ।'

ତା ପରେ କବିତାରେ ଅଛି ଯେ, ଏହାପରେ ମାଙ୍କଡ଼ସାକୁ ଚଢ଼େଇ ମାରିଲା---ଚଢ଼େଇକୁ ଛଞ୍ଚାଣ ଖାଇଲା, ଛଞ୍ଚାଣକୁ ବିଲୁଆ ଖାଇଲା, ବିଲୁଆକୁ କୁକୁର ଖାଇଲା, କୁକୁରକୁ ହେଣ୍ଟା ଖାଇଲା, ହେଣ୍ଟାକୁ ବାଣୁଆ ମାରିଲା---ଅର୍ଥାତ୍ ଯେଉଁ ବଡ଼ ସେ ସାନକୁ

ମାରୁଛୁ, କ୍ଷମା କରନାହିଁ । ଏଥିରୁ ଶିକ୍ଷକ ଏହି ନୀତି ଶିକ୍ଷା ଦେଲେ ଯେ—ଲଢେଇଟା ପ୍ରକୃତିଗତ—ସେଥିପାଇଁ ହିଟଲର ତାଙ୍କ ପିଲାମାନଙ୍କୁ ବଳୁଆ ହେବାକୁ ଚାହୁଁଛନ୍ତି । ତା ହେଲେ ସବୁବେଳେ ସେମାନେ ଜେତା ହେବେ—ଯେ ବଡ଼ ବା ଶକ୍ତିଶାଳୀ ତାରହିଁ ସମ୍ମାନ ଅଛି । ହିଟଲର ତେଣୁ ଜର୍ମାନୀକୁ ଏପରି ଶକ୍ତିଶାଳୀ କରିବାକୁ ଚାହାନ୍ତି, ଯଦ୍ଦ୍ୱାରା ସାରା ପୃଥିବୀରେ ଯେ କୌଣସି ଶକ୍ତିକୁ ସେ ଆକ୍ରମଣ କରି ହଟାଇ ଦେଇ ପାରିବେ । ଏହାହିଁ ହେଲା ନାଜୀ ଦର୍ଶନ—ମଣିଷର ସମସ୍ତ ପ୍ରକାର ସୂକ୍ଷ୍ମ ପ୍ରବୃତ୍ତି ଲୋପ କରି ଦେବାର ଚେଷ୍ଟା—ଧ୍ୱଂସ ଓ ନଷ୍ଟ କରିବାହିଁ ଏହାର ଏକମାତ୍ର ଲକ୍ଷ୍ୟ । ୧୯୪୧ ମସିହା ଅକ୍ଟୋବର ୩ ତାରିଖରେ ହିଟଲର କହିଥିଲେ--"ସୋଭିଏଟ ଇଉନିୟନରେ ଯେପରି ସମସ୍ତଙ୍କର ସମାନ ଅଧିକାରର ନୀତି ରହିଛି, ଆମ ଦେଶ ସେପରି ନୀତି ଦ୍ୱାରା ଚାଳିତ ନୁହେଁ ।" ଏହିଥିରୁ ଜର୍ମାନୀ ଦେଶର ନୀତି ସହଜେ ବୁଝି ପାରିବ । ଧନୀ, ଗରିବ, ଶୋଷକ, ଶୋଷିତ ରହନ୍ତୁ ଏପରି ନୀତିର ଗର୍ବ କରିବା କେବଳ ଫାସିଷ୍ଟବାଦ ପକ୍ଷରେହିଁ ସମ୍ଭବ ଓ ତାହାହିଁ ଦର୍ଶନରୁ ଜାତ ।

ହିଟଲର ଜନସାଧାରଣଙ୍କୁ ଦଳିତ କ୍ରୀତଦାସଙ୍କ ଚକ୍ଷୁରେ ଦେଖନ୍ତି ତାଙ୍କ ନିଜ ଲେଖାରୁ ଜଣାପଡ଼ିବ । ସେ କହିଛନ୍ତି—

"ସବୁ କଥା ଜନତା ବୁଝିବାକୁ ଅକ୍ଷମ । ତାଙ୍କ ବୁଝିବା ଶକ୍ତି କମ ଓ ଭୁଲିଯିବା ଶକ୍ତି ଖୁବ୍ ବେଶୀ । ( ହିଟଲରଙ୍କ ଆତ୍ମଚରିତ 'ମେନ୍ କାମ୍ଫ୍' ୧୯୮ ପୃଷ୍ଠା ) ପୁଣି ସେ କହିଛନ୍ତି—

"ଜନତା ବା ଜନସାଧାରଣ ମାଇଚିଅ ପ୍ରକୃତର, ସେମାନେ ବସ୍ତୁର ବରନ୍ତ ନାହିଁ ବା ଗୃହି ବସ୍ତୁର ଦୁଚନଷ୍ଟ ହୁଅନ୍ତ ନାହିଁ । ସେମାନେ ଭାବପ୍ରବଣତା ଓ ଉଚ୍ଛ୍ୱାସରେ ଭାସି ଯାଅନ୍ତ ।"
(ହିଟଲରଙ୍କ ଅତ୍ମଚରିତ ମେଁ କାଁଫ ୨୦୦ ପୃଷ୍ଠା)

ଫାସିଷ୍ଟବାଦର ସବୁଠାରୁ ବେଶୀ ଭୟ ଜନସାଧାରଣଙ୍କ । ଜନସାଧାରଣ ବା ଶ୍ରମଜୀବୀ ଯେତେ ଚେତନଶୀଳ ହେବେ, ଯେତେ ଶିକ୍ଷିତ ହେବେ, ସେତିକି ନାଜୀମାନଙ୍କର ଅପକାର୍ଯ୍ୟ ଧରାପଡ଼ିଯିବ । ଶ୍ରମଜୀବୀଙ୍କୁ ଅନ୍ଧାରରେ ରଖିଲେ ଫାଶିଷ୍ଟ-ବାଦର ଲାଭ । ସଂସ୍କୃତ ନାଁ ଶୁଣିଲେ ତାଙ୍କର ପିଳେହି ପାଣି । ଗୋଏରିଂଙ୍କ ଭାଷାରେ--'ମୁଁ ଯେତେବେଳେ 'ସଂସ୍କୃତି' ଶବ୍ଦ ଶୁଣେ, ମୋର ପିସ୍ତଲ ଟାଣିବାକୁ ଇଚ୍ଛା ହୁଏ ।'

ଶିକ୍ଷା ଓ ସଂସ୍କୃତି ଫାଶିଷ୍ଟବାଦର ଶତ୍ରୁ । ନାଜୀ ଅମଳରେ ୧୯୩୩ ଠାରୁ ୧୯୩୯ ଭିତରେ ଛାତ୍ର ସଂଖ୍ୟା ଏକଲକ୍ଷ ପଚିଶ ହଜାରରୁ ଷାଠିଏ ହଜାରକୁ କମି ଆସିଥିଲା, ସ୍କୁଲଗୁଡ଼ିକ କେବଳ ସାମରିକ ଶିକ୍ଷାର କେନ୍ଦ୍ର ହୋଇଥିଲା ।

## ଜାତି ଥିଓରି

ଫାଶିଷ୍ଟବାଦ ଜାତି ଥିଓରି ଦ୍ୱାରା ଭାବପ୍ରବଣ ପିଲମାନଙ୍କୁ ମତାଏ । ଜର୍ମାନୀ ଜାତି ସବୁଠାରୁ ବଡ଼ ଜାତି, ତାର ରକ୍ତ ଅତି ପବିତ୍ର—ଟିଏ ଆର୍ଯ୍ୟ ଜାତି, ତେଣୁ ଅନ୍ୟାନ୍ୟ ନିକୃଷ୍ଟ ଜାତିମାନଙ୍କୁ ଶାସନ କରିବା ତାର ହକ୍ ଦାବୀ । ଜର୍ମାନୀ ଜାତି ଅନ୍ତର୍ଜାତିକ ନିୟମକାନୁନ ମାନେ ନା—ଆଗ ଜର୍ମାନ ଜାତିକୁ ବଳଶାଳୀ କରାଅ ଓ ଜର୍ମାନୀ ଭିତରେ ଅନ୍ୟ ଜାତି ରହି ଜର୍ମାନୀର ପରମ୍ପରା ଇଚ୍ଛାଜ୍ୟ ଓ ଅର୍ଯ୍ୟମର୍ଯ୍ୟାଦା ହରାଇ ଦେଉଥିଲା-ଅନ୍ୟାନ୍ୟ ଜାତିକୁ

ମୂଳପୋଛ କରିବ — ତେବେ ଯାଇଁ ଜର୍ମାନୀ ଜାତି, ଜର୍ମାନ ଯୁବକ ଯୁବତୀ ସମସ୍ତେ ସୁଖସ୍ୱାଚ୍ଛନ୍ଦ୍ୟରେ ରହିପାରିବେ--ଏହାହିଁ ହେଲା ନାଜୀବାଦର ଜାତି ଥିଓରି ଓ ଏହାକୁ ପ୍ରଚାର କରି ନାଜୀ ଯୁବକ ଓ ଯୁବତୀମାନଙ୍କୁ ମତାଇ ଦିଏ । ସବୁ ଜାତିର କ୍ଷମତା ସମାନ ହୋଇ ନ ପାରେ, ବଡ଼ ହୋଇ ଜାତିମାନଙ୍କର ଜନ୍ମ ଓ ସାନ ହୋଇ ମଧ୍ୟ ଜାତିମାନଙ୍କର ଜନ୍ମ, ତେଣୁ ବଡ଼ ଜାତି ସାନ ଜାତି ଉପରେ ରାଜତ୍ୱ କରିବ । ଏଥିରେ ସନ୍ଦେହ କ'ଣ ଅଛି ?

## ଫାଶିଷ୍ଟବାଦ ଓ ସ୍ତ୍ରୀ ଜାତି

ସଭ୍ୟତାର ମାପକାଠି ସ୍ତ୍ରୀ–ସମାଜରେ ସ୍ତ୍ରୀର ସ୍ଥାନ ଯେପରି ସମାଜର ସଭ୍ୟତା ମଧ୍ୟ ସେହିପରି । ଯେଉଁ ସମାଜ ସ୍ତ୍ରୀକୁ ପୁରୁଷ ସହିତ ସମାନ ଅଧିକାର ଦିଏ, ସେ ସମାଜ ଅନ୍ୟାନ୍ୟ ସମାଜଠାରୁ ନିଶ୍ଚୟ ଶ୍ରେଷ୍ଠ । ସାମ୍ୟବାଦୀ ସମାଜରେହିଁ ଏହା ସମ୍ଭବ — ସମ୍ଭବ ହୋଇଛି ମଧ୍ୟ ।

ସ୍ତ୍ରୀ ପରାଧୀନତା ସହିତ ଶ୍ରେଣୀସମାଜ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଯେଉଁଠାରେ ଶୋଷକ ଶୋଷିତ ବା ଧନୀ ଦରିଦ୍ର ଅଛନ୍ତି ସେଠାରେ ସ୍ତ୍ରୀ ପରାଧୀନ । ପୁଞ୍ଜିବାଦୀ ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ପ୍ରାଧାନ୍ୟ ଥିବାରୁ ସ୍ତ୍ରୀ ମଧ୍ୟ ବ୍ୟକ୍ତିଗତ ସମ୍ପତ୍ତିରୂପେ ବିବେଚିତ । ପୁଞ୍ଜିବାଦ ସାମନ୍ତବାଦଠାରୁ ଉନ୍ନତ ହେଲେହେଁ, ଉତ୍ପାଦନ କ୍ଷେତ୍ରରେ ବିପ୍ଳବ ଆଣି ସାମାଜିକ ବିକାଶ ଆଣିଥିଲେହେଁ ଓ ସାମ୍ୟବାଦ ସମାଜ ଗଢ଼ିବାପାଇଁ ପ୍ରାଥମିକ ଅବସ୍ଥା ତିଆରି କରିଥିଲେହେଁ ସାମନ୍ତବାଦ ଯୁଗର ସ୍ତ୍ରୀ ପୁରୁଷ ସଂବନ୍ଧକୁ ବଜାୟ ରଖିଛି ( କିପରି ରଖିଛି ଆମର 'ସୋଭିଏଟ୍ ରୁଷ୍' ନାମକ ବହି ଦେଖିଲେ ଜାଣିବେ । )

କେବଳ କମ୍ୟୁନିଷ୍ଟ ଅର୍ଥନୀତି ବଳରେ ସ୍ତ୍ରୀ ସାମାଜିକ ଉତ୍ପାଦନ ଓ ସଂଗଠନରେ ଭାଗନେଲେ ସେ ପୂର୍ଣ୍ଣଭାବରେ ସ୍ୱାଧୀନ ହୋଇ ପାରିବ ଓ ପୁରୁଷ ସହିତ ସମାନ ହୋଇ ପାରିବ । (ଲେନିନ୍)

କିନ୍ତୁ ଫାସିଷ୍ଟବାଦ ପୁଞ୍ଜିବାଦଠାରୁ ବେଶୀ ସ୍ପଷ୍ଟଭାବରେ ପୁଞ୍ଜିବାଦର ପ୍ରତିକ୍ରିୟା ନୀତି ଧରେ । ସେ କହେ—ସ୍ତ୍ରୀମାନଙ୍କର ସ୍ଥାନ ଘରେ, ସ୍ତ୍ରୀ ପୁରୁଷର ଅଧିନରେ ପ୍ରତିପାଳିତ ହେବ--ତାର ନିଜେ ଉପାର୍ଜନ କରିବାର ଅଧିକାର ନାହିଁ—ସ୍ତ୍ରୀ ଶିକ୍ଷା ପାଇବା ଉଚିତ ନୁହେଁ—ସ୍ତ୍ରୀ ଶିକ୍ଷାର ସଂଖ୍ୟା କମାଇଦେବା ଉଚିତ--କାମ କରୁଥିବା ସ୍ତ୍ରୀଲୋକ ସ୍ଥାନରେ ପୁରୁଷ ନିଯୁକ୍ତ କର--ସେ ଯାଇଁ ବିବାହ କରୁ ଓ ଯୁଦ୍ଧପାଇଁ ପିଲା ଜନ୍ମ କରୁ ।

ଉଚ୍ଚଶିକ୍ଷା ସ୍ତ୍ରୀମାନଙ୍କୁ ଦିଆଯିବ ନାହିଁ ବୋଲି ଫାସିଷ୍ଟ ଜର୍ମାନୀ ସରକାରର ନିୟମ ହୋଇଗଲା ଓ ଶତକରା ୧୦ ଭାଗ ସଂଖ୍ୟା କମାଇ ଦିଆଗଲା । ୧୯୩୪ରେ ସାରା ଜର୍ମାନୀରୁ ୧୫ ହଜାର ଉଚ୍ଚ ଶିକ୍ଷା ପାଇବାକୁ ଇଚ୍ଛୁକ ଥିବା ସ୍ଥଳେ ୧୫୦୦ ସ୍ତ୍ରୀଲୋକଙ୍କୁ ଅନୁମତି ଦିଆଗଲା ।

କେବଳ ସେତିକି ନୁହେଁ, ଯେଉଁ ସ୍ତ୍ରୀଲୋକମାନେ ଫାସିଷ୍ଟବାଦ ପସନ୍ଦ କରୁ ନ ଥିବେ ବା ଅନ୍ୟ କୌଣସି ରାଜନୀତିକ ମତବାଦର ବୋଲି ଜଣାପଡ଼ିବେ ଓ କୌଣସି ସ୍ତ୍ରୀଲୋକ ଯଦି ଯୁଦ୍ଧପାଇଁ ବଳୁଆ ପିଲା ଜନ୍ମକରି ପାରିବାର ସମ୍ଭାବନା ନ ଥିବ ତେବେ ସେମାନଙ୍କୁ ଜବରଦସ୍ତି ବନ୍ଧ୍ୟା କରି ଦିଆଯିବ--ଏହା ଫାସିଷ୍ଟବାଦ ଜର୍ମାନୀରେ କରାଯାଇଥିଲା ।

ଶେଷରେ ଏତିକି କୁହାଯାଇପାରେ ଯେ ପୁଞ୍ଜିବାଦ ଫାଶିଷ୍ଟବାଦ ଅବସ୍ଥାରେ ବଞ୍ଚିବାକୁ ଶେଷ ଚେଷ୍ଟା କରେ । ଶ୍ରେଣୀ ଚେତନାକୁ ଦବାଇ ରଖିବାକୁ ପ୍ରାଣପଣେ ଲାଗିପଡ଼େ । ଅର୍ଥାତ୍ :-

(୧) ପୁଞ୍ଜିବାଦର ମୌଳିକ ଲକ୍ଷ୍ୟକୁ ହାସଲ ରଖେ-- ସର୍ବହରାର ବଢୁଥିବା ଚେତନା ବିପ୍ଳବରେ ପରିଣତ ହେବାର ଅସନ୍ନ ବିପଦ ଦେଖି ତାକୁ ଦମନ କରେ ।

(୨) ପୁଞ୍ଜିବାଦୀ ଏକଛତ୍ର ଶାସନ ଜୋରସୋରରେ ଚଳାଏ ।

(୩) ପାର୍ଲିମେଣ୍ଟାରୀ ଗଣତନ୍ତ୍ର କାଏମ କରି ଦଏ ନାହିଁ—ଏହା ଦନ୍ଦ୍ୱନ ଲୋପ କରେ ।

(୪) ଶିଳ୍ପ ସଂଗଠନ ସବୁ କ୍ରମେ ସରକାରର ଏକଚାଟିଆ ଲାଭ ହୋଇ ରହେ ।

(୫) ଶ୍ରମିକ ସଂଗଠନ ସବୁ ଦମନ କରେ ଓ ସଙ୍କୁଚିତ କରାଇ ଦଏ ।

(୬) ଯୁଦ୍ଧଅଡ଼କୁ ଅଗେଇବା ପାଇଁ ଦେଶକୁ ତିଆର କରେ ଓ କ୍ରମେ ସାମ୍ରାଜ୍ୟବାଦୀ ଶତ୍ରୁତା ବା ବିରୋଧ ବଢ଼ାଏ ।

ସଂକ୍ଷେପରେ ଏହାହିଁ ହେଲା ପୁଞ୍ଜିବାଦ ଓ ପୁଞ୍ଜିବାଦର ଶେଷ ଅବସ୍ଥା ଫାଶିଷ୍ଟବାଦ ।

ସମାପ୍ତ



କଟକ ନବଯୁଗ ପ୍ରେସରେ ଅନନ୍ତ ପଟ୍ଟନାୟକଙ୍କ ଦ୍ୱାରା ମୁଦ୍ରିତ

# ସହାୟକ ବହି ତାଲିକା

ପୁଞ୍ଜିବାଦ ବହି ଲେଖିବାରେ ନିମ୍ନଲିଖିତ ଇଂରାଜୀ ବହି ଗୁଡ଼ିକରୁ ସାହାଯ୍ୟ ନିଆ ଯାଇଛି

କ୍ୟାପିଟାଲ୍—କାର୍ଲ ମାର୍କସ୍

ଇମ୍ପିରିୟାଲିଜମ୍—ଲେନିନ୍

ଲେନିନିଜମ୍—ଷ୍ଟାଲିନ୍

ଅରିଜିନ ଅଫ୍ ଫ୍ୟାମିଲି—ଏଙ୍ଗେଲସ୍

ସୋସିଆଲିଜମ୍ ଇନ୍ ଥିଓରୀ ଏଣ୍ଡ୍ ପ୍ରାକ୍ଟିସ୍ —ଜନ୍ ଷ୍ଟ୍ରାଚୀ

ପଲିଟିକ୍ୟାଲ୍ ଇକନମି—ଲିଓନୋଟିଭ

ବ୍ରିଟେନ୍ ଇନ୍ ୱାର୍ଲଡ୍ ୱାର—ଆର୍. ପାମି, ଦତ୍ତ